## ପଞ୍ଚମ ସର୍ଗ ।

ସ୍ୱପ୍ନର ଗୃହଲକ୍ଷ୍ୟ ମୋର ଉଜ୍ଜଳ ଶଦ୍ୟାବ, (୧)
ଶବେଜର ଝିଙ୍କାସରେ (୨) ତୋଳଣ ବହିଲ
ଭାମଭାର ଖଣ୍ଡ ସ୍ରୋତ ଶୁଖିଗଲା ତହିଁ ।
କେବଣ ନୂତନ ସ୍ୱର୍ଗେ ପ୍ରବେଶିଲ ଆସି,
ପୁଣ୍ୟବଳେ ସ୍ୱର୍ଗଭୋଗ ଦେହାନ୍ତେ କଳ୍ପିତ,
ମାତ୍ର ଏ ନୂତନ ସ୍ୱର୍ଗେ ମିଳେ ତା ଦେହରେ ।
ଏହା ତୁଳନାରେ ଧନ୍ୟ ନରକର ଦ୍ୱାର,
ଧନ୍ୟ ତୁଳନାରେ ଏହୁ ବୈକୁଣ୍ଠସୋପାନ ।
ପୋଡ଼ିଦେଇ ଅଭିମାନ-ତୁଷ-ପୁତ୍ତଳିକା,
ଜାଳିଦେଇ ଏ ସ୍ୱପ୍ନାନ ଜ୍ଞାନ-ପାପ ଦୁର୍ବେ ।
ନାହିଁ ଏଥି ନାଗରିକ-ଜୀବନ-ସ୍ଖଳନ
ଆଶା ବା ଦୁରାଶା, ଚିନ୍ତା ଗର୍ବ ପଙ୍କଦୁଷ
ହିଂସା ଅଭିଜାତ୍ୟ ଆଦ, ନିର୍ମଳ ଏ ସ୍ଥଳୀ ।
ପାରେ ନାହିଁ ପଶି ଏଥି ପ୍ରାକୃତ ଲାଳସା,
ମାନବ ଜୀବନ ଯୁଦ୍ଧ ଶର ଉତ୍ତାପର
ନାହିଁ ଏଥି ଅଧିକାର, ଅନ୍ଧକାରବର
ସ୍ୱାର୍ଥ-ବନୁଷ୍ଠର ନିଷ୍ଠୁ ସଙ୍ଘର୍ଷଣଜ୍ୱାଳା ।
ଶିଳାମୟ ସ୍ଥଳ, ମାତ୍ର ସୁନ୍ଦର, ମଧୁର—

---

(୧) ଜଳାସୂର୍ଯ୍ୟ ।
(୨) ଉର୍ଦ୍ଧ୍ୱା ।

## ମହେନ୍ଦ୍ର ।

ପ୍ରେମର ଅମୃତହ୍ରଦ, ଶୁଣି ସ୍ୱାମୀଙ୍କ,
ବକ୍ଷରେ ଯା ଅଛି ସତ୍ୟ, ଧ୍ରୁବ ବା ସୁନ୍ଦର,
ମିଶିଅଛି ସେ ସକଳ ଭକ୍ତରେ ଏଥିର ।
ପୁଣି ଏହା ସ୍ମୃତିରାଜ୍ୟ, ଇତିହାସମୟ,
ଏ ସ୍ଥାନର ବାୟୁ, ନଦୀ, ଝର, ଦେବାଳୟ
ସର୍ବେ ବ୍ୟକ୍ତ କରୁଛନ୍ତି ଇତିହାସ ଗାଥା ।
ଏ ସ୍ଥାନ ଦର୍ଶନମାତ୍ରେ ହୃଦୟ-ମୂଳରେ
ପ୍ରତିଫଳି ଫୁଟି ଉଠେ ଗତ ପୁରା ଛବି,
ଆଣିଦିଏ ତାହା ନବ ଜୀବନ ପ୍ରେରଣା ।

ନିମ୍ନେ ଉପତ୍ୟକା ମଧ୍ୟେ ଭାଗେ ବଣାବଣ,
ପଡ଼ିଅଛି ଯେତେ ତହୁଁ ଶାଲମା ନ ଗିଣ୍ଡ,
ତମାଳ, ଅଳନ, ଶାଳ, ଅସନ, ପିଆଳ,
ଗଜବନ୍ତ ଅଧଃଭାଗ୍ରି ଧବଳ ଅଠିଳ, (୧)
ତେଲିବଶୋଧନ୍ନ ନଗୀ, ରସାଲ, ଗୁଗ୍ଗୁଳ,
ଇତ୍ୟାଦି ପାଦପେ ଅତି ଗହନ ସେ ବନ,
ନାହିଁ ତହିଁ ଶୁଷ୍କ କାଷ୍ଠ ଅଙ୍ଗୁଷ୍ଠ ପ୍ରମାଣ,
ତର ତଣା ହେଲୁ ନାମ ହୋଇଛି ସାର୍ଥକ;

(୧) ବୃକ୍ଷବିଶେଷ । ଏହାର କାଠ ଅତି ଉତ୍କୃଷ୍ଟ । ବୃକ୍ଷଟିର ଗନ୍ଧ ଉତ୍କଟ ଏବଂ ଶୁଭ ।

## ପଞ୍ଚମ ସର୍ଗ ।

ଦୂର ତରୁଣ ସେ ବନ, ଶୋଣଗଙ୍ଗସ୍ଥାନ ।
ପୂର୍ବେ ସାଗର ତାହା ସ୍ୱନାମୁଦପର । (୧)
କୁମାର ଅନଙ୍ଗ ସିଂହ, ଚନ୍ଦ୍ରବଂଶଧର,
ଯପି ପଞ୍ଚନ୍ଦ୍ରବର୍ଷ ସ୍ୱଦୂର ଅଙ୍ଗରେ
ସାଧୁଥିଲେ ତପ ତହିଁ ଶଙ୍କର ଉଦ୍ଦେଶ୍ୟ,
ତୋଷ ଲଭି ଆଶୁତୋଷ କେତେ କାଳ ପରେ
ଦଲେ ସ୍ୱପ୍ନାଦେଶ, "ବତ୍ସ, ପର୍ବତରେ କାଲି
ଦେ। ବସିବା ଶିଳାଖଣ୍ଡି କରିବୁ ଅନ୍ତର,
ତହିଁରୁ ଜନମି ତଥା ମିଶିବ ସାଗରେ,
ସେ ନଦୀକୁ ସୀମା କରି ଏ ବଙ୍ଗର୍ଭ ସ୍ଥଳେ
କରିବୁ ପ୍ରତିଷ୍ଠା ରାଜ୍ୟ, ହେବୁ ତହିଁ ରାଜା ।"
ଯଥାକାଳେ ଶିବାଦେଶ ପାଳିଲେ ବାମନ,
ଶିଳା ଉତ୍ତୋଳନ ବେଳେ ପଡ଼ିଲାକ ଖସି
ଅଙ୍ଗୁଳିରୁ ସ୍ୱର୍ଣ୍ଣମୁଦ୍ରା ସେ ଶିଳା ଗହ୍ୱରେ,
ତେଣୁ ସ୍ୱର୍ଣ୍ଣମୁଦ୍ରା ଅଖ୍ୟା ବହିଲା ତଟିନୀ ।

ବାହାର ମହେନ୍ଦ୍ର ଶିରୁ ଖଣ୍ଡେ ଖଣ୍ଡେ ମେଘ
ଯାଉଛନ୍ତି ସମୁଦ୍ରକୁ ବାର୍ତ୍ତା ଦେବାପାଇଁ,
କେତେ ଅବା ଫେରୁଛନ୍ତି ପ୍ରତ୍ୟାବର୍ତ୍ତ ସେନ,

---

(୧) ସ୍ୱର୍ଣ୍ଣମୁଦ୍ରା ନଦୀ ଏଠାରୁ ଜାତ ହୋଇଅଛି ।

ମହେନ୍ଦ୍ର ।

ବଢ଼ୁଛନ୍ତି କ୍ଷୟ୍ୟାସ୍ୱର୍ଗ କେତେ ସିନ୍ଧୁ ପରେ,
ବସିଯାଇ କେତେ ଖଣ୍ଡ ସାଗରନେମୀରେ
ସ୍ତରେ ସ୍ତରେ, ଧୂଳି ଭୂମି ଗିରି—ବିସ୍ତୃତ,
ଚଢୁଛନ୍ତି ମହେନ୍ଦ୍ରକୁ କରି ପରିହାସ
ଦୁର୍ଦ୍ଦମ୍ୟ ଜର୍ମ୍ମନ ଭବେ, ମାନ୍ୟ ପର୍ବତର
ଏଡ଼େ ଦମ୍ଭ, ଏ ଧୃଷ୍ଟତା ଜଳେଶ୍ୱ ବାହସ
ବସ୍ତ୍ର ଉତ୍ତ୍ରାସ ଶୂନ୍ୟ, ଫେନଦନ୍ତପନ୍ତି ।
କେତେ ଅଜରଣୀ ଜଳ ଲୁଣ୍ଠନ୍ତ ସନର,
ଏ ଅନ୍ୟାୟ ଆଚରଣ, ଯେ ଅଶ୍ରୁପାତ
ତାହା ସଙ୍ଗେ ପରିହାସ, କି ସୀମାଲଙ୍ଘନ !
କି ନ କର ପାରେ ଜଏ ହେଲେ ଭ୍ରଷ୍ଟମତି ।
ମହାମନା ଗିରିବର, ଚିରବ୍ରତ ତାର
ବୈରାଗ୍ୟ ସଂଯମ, ନାହିଁ ଲଭେହେଁ ଭ୍ରୂକ୍ଷେପ
ମାନ ଅପମାନ ପ୍ରତି, ମହାଜନେ କେବେ
ନ କୁଅନ୍ତି ବିଚଳିତ ନୀଚ ବ୍ୟବହାରେ,
ପ୍ରତ୍ୟୁତ କ୍ଷମନ୍ତି ନୀଚେ କ୍ଷମାପାତ୍ର ଜାଣି ।
ଚିଲାଇଲ ମାନ୍ୟଶୈଳ ଗର୍ବ ଦୌର କରେ,
ସହିଲ ଦର୍ପ ତାର, ଶେଷ ଅଭିନୟ,
ନଦାରୁଣ ହଟକଟା କଲୁ ତାକୁ ଲଗେ ।
ଭାବିବାକୁ କେଢ଼େ ଯେତୁ ମହାଜନ ଶୀଳ,

ମଣ୍ଡଳ ତ୍ୟାଜି ଯାଏ ସେତୁ ନମ୍ରିତ ଉତ୍ତାପେ ।
ଦେଖୁଥିଲେ ଏହି ଦୃଶ୍ୟ ଅଳନ୍ଦେ ବସିଣ,
ଅକସ୍ମାତ ଶୀର୍ଷୁଁ ଆସି ଆକ୍ରମିଲା ଶୀତ,
ଥରିଲା ଶରୀର । ତହୁଁ ଗୃହମଧ୍ୟେ ଯାଇଁ
ଲୁଗା ଘୋଡ଼ି ଧୂନି ପାଶେ ବସିଲେ ନିଶ୍ଚଳେ ।
ନାହିଁ ଏଥି କେ ରହସ୍ୟ, ମହାପ୍ରେର ଏକା
ବାହବାହ, ସେ ତ ଧୂମରୂପୀ, କେ ବୋଧିବ
ପଥ ତାକୁ, ପଶି ଆସି ଗବାକ୍ଷ ଫାଙ୍କରେ
ଘେରିଲା ଶୁଷ୍କତା ଗୃହ, ବସ୍ତ୍ର ପ୍ରଭୃତିର
ପଳାଇଲା ଅର୍ଦ୍ଧମୁକ୍ତ ଦ୍ୱାରପଥେ ଶରେ,
ଧରି ଧରି ଗଳିଗଲା, କି କୌତୁକ ଆହା !
କାହିଁ ନବଘ୍ରସୀ ଘନ, କାହିଁ ମୁଁ ପତଙ୍ଗ
ପୃଥ୍ୱୀବାସ, ଦେଖୁଥିଲି ଊର୍ଦ୍ଧ୍ୱ ନେତ୍ରେ ଯାକୁ
ପାଇ ତାକୁ ହାତେ ଆଜ ଖେଳନ୍ତି ତା ସହ,
ଏହାହିଁ ତୋ ଧୀନ ଭାଗ୍ୟେ ଲୁଟେବିଲ ସମ୍ପତ୍ତି ।
ଧନ୍ୟ ନାଟ୍ୟକାର ଶିବ, କେତେ ଦୃଶ୍ୟପଟ
କରୁ ଛୁ ପରିବର୍ତ୍ତନ ମୁହୂର୍ତ୍ତେ ମୁହୂର୍ତ୍ତେ,
ସନ୍ଧ୍ୟା ହେବେଇ ଯାଉନ୍ତି ଧୂମରୂପୀ ଘନ
ଉଡ଼ିଲା ଆକାଶେ ପୁଣି; ଲୁଚା ପୁଣି ଯଥା,
ଅଟିଲେ କି ଜ୍ୟୋତିବେଗ ଦେବପେ ଶତଦ୍ୟୋତେ,

## ମର୍କେରା ।

ଏବା ନବ-ଚନ୍ଦ୍ରବାସ୍ତୁ ବସ୍ତ୍ରାଦ ବଦନ
ଶୈଳ ଘନ-ବୃକ୍ଷଗୁଚ୍ଛ କରୁଛି ଚାପଣ,
ଛଡ଼ାଇ ବଳକାସୂତା ଦେଖ ଏ ଦେଖ,
ଦେଉଛି ଦିଗ୍ୟାପ୍ତ, ତାହା ଉଡ଼ୁଛି ଅନିଳେ,
କ୍ରମେଶେ ତାହ ସେ ପୁଣି ଯାଉଛି ମିଳାଇ । (୧)
ଦେଖ କ୍ଷଣେ ଖରା, କ୍ଷଣେ ବର୍ଷା କ୍ଷଣେ ଖରା,
ଏ ଚାଞ୍ଚଲ୍ୟମୟ ଭାବ ପ୍ରକୃତି ସତୀର;
ଏ ଅନନ୍ତ ମହୋତ୍ସବ ଆନନ୍ଦମୟୀର ।

ବାହାରର ଅପଗୃହେ ପର୍ବତ ଭ୍ରମଣେ,
ସୁବିସ୍ତୀର୍ଣ୍ଣ ଉପତ୍ୟକା, ମାପପର୍ଣ୍ଣୀ (୨) ପୂର୍ଣ୍ଣ,
ମଧ୍ୟେ କ୍ଷୁଦ୍ର ଉପବନ, ମାନବରଚିତ,
କମଳା, ବାତାପୀ, ଲେମ୍ବୁ, ପିଚୁଳ ପ୍ରଭୃତି
ଫଳବୃକ୍ଷମାନ ତହିଁ ଉଚ୍ଚ ବଢ଼ୁଅଛେ ।
ତରୁଣ ପ୍ରସ୍ତର ପୃଷ୍ଠେ ରଙ୍ଗ ପୋକଶୁଙ୍ଗା,
ଯାହା ଏ ସୁନ୍ଦର, ତବା ଗିରି ବାଳକାଏ
ଲେଖିଛନ୍ତି କୌତୁକରେ ଅବଳ-ମୂର୍ତ୍ତିକେ
ଅଷ୍ଟଦଳ ପଦ୍ମ । ମୌନେ ବସିଛି ଗୋଲାପ

(୧) ମର୍କେରା ଉଚ୍ଚରେ ସ୍ଥିତ, ସୂର୍ଯ୍ୟଙ୍କ ଅବସ୍ଥାରେ ବରଫପାତ ହୁଏ ।
(୨) ବଣବର ।



ଯୁଧିଷ୍ଠିର ଦେବାଳୟ । (୪୮—୪୯ ପୃ.)

ମେଘମାଳାରୁ କୋଳେ, ଯେଉଁ ସ୍ଥଳ ପୂର୍ବେ ଶୋଭୀ
(ଜଳ ଉପରେ ପଦ୍ମ ଲକ୍ଷ୍ମୀ କମଳାଙ୍କ ଯଥା)
ଭାମିନୀର ଶିଳ୍ପି ଶୋଭା ଯାର ଇତିହାସ,
କେ ବୁଝିବ ମୂଲ୍ୟ ତାର ଏ ଜଗତ ସର୍ଗେ,
କରିବ ଆଦର କେ, ସଦା ଏ ଜନ୍ମାରେ
ଦେଖଇ ସେ ଦୂର ଦୂର ଅନ୍ତିମର୍ମପାର ।
ସୁବର୍ଣ୍ଣ ରଞ୍ଜିତ ଚାମ୍ପା ତହିଁ ଚନ୍ଦ୍ରମଣି,
ପିନ୍ଧାଉଛି ବସଣୀ ସେ ବନଲକ୍ଷ୍ମୀ ନାଚେ,
ମାଣ ଡାଳ ମାନ ନାହିଁ ତାରୁ, ଲୁଛ ସିନା
ଉତ୍ସର୍ଗ ହୃଦର ଅଙ୍କେ ଗ୍ରାମ୍ୟ ଆବରଣ ।
ଯୁଧିଷ୍ଠିର ଦେବାଳୟ ଦଶିଲ ଅନ୍ତରେ (୧)
ଅବନ୍ତୀ ତାଳଦେ ମଗ୍ନ, ଉଦୀବର କୋଳେ
ସ୍ୱପ୍ନ ଓ ଚନ୍ଦ୍ରିକା, ଜ୍ୟୋ ଅଳ କୋଳେ ଲୁଦ ।
ବନ୍ଦ୍ରଚୂଡ଼ ଦେବାଳୟ, ସ୍ୱଳ୍ପ ସ୍ୱର୍ଣ୍ଣଚୂଡ଼,
ଦୁରନ୍ତ ଯବନ ଦଳ (୨) ଅପଦର ତାଦା
ଅକିଞ୍ଚ ଅଧମ ସର୍ବି, ରକ୍ଷିଛି ତତ୍କାର
ତହିଁ ଦଳସିତ ନାମ କେବଳ ତାହାର ।
ଦେଖ ହସ୍ତ ଶ୍ୱଳ ନାହିଁ ସର୍ବି ନାଶେ ଶତ,

---

(୧) ଯୁଧିଷ୍ଠିର ଦେଉଳର ତାଳୁ ଦୂର ସ୍ତମ୍ଭ ଶେଷରେ ଥିଲା । ଇତି ତାଳର ଦକ୍ଷତ ୪ ହାତ ।   (୨) କଳାପାହାଡ଼ ।

## ଅବେଦନ ।

ପାମର ଅଙ୍ଗରେ ହାୟ କୋଟି କୋଟି ହସ୍ତ
ସାଧୁଥିଲା ସର୍ବନାଶ ଶୋକ ହୃଦ୍‌ଭାର
ତଦନ୍ତ ବସ୍ତୁର ଗର୍ଭ ସେ କଳାପାହାଡ଼
ଦେଉଳରେ, ମାତ୍ର କାଳ-କଳାପାହାଡ଼ର
ବାଜ ନାହିଁ ହସ୍ତ ତହିଁ ଅଗରୁ ଅବଧି ।
ତଥେ ଜନଶ୍ରୁତି, ଥିଲା ଦେଉଳ ଅଦୂରେ
ବହ୍ନିଗର୍ଭ, ଜଳାଗର୍ଭା, ଶିଳାଗର୍ଭ ଏବେ ।
କ୍ଷୁଦ୍ର ଉପବନ ମଧ୍ୟେ ବିରାଜେ ଦେଉଳ,
ବୋଲ ହୋଇ ପୂର୍ଣ୍ଣମନ୍ତ୍ର ଯୁଗ ଯୁଗାନ୍ତରୁ ।
ପ୍ରକାଶ, ମୂର୍ତ୍ତିମନ୍ତ ମାନବ କ୍ଷମତା
ହେବେ ମିଳ ମଣ୍ଡି ଛନ୍ଦି ଯେ ସ୍ଥାନକୁ ଧଲେ
ଗାମ୍ଭୀର୍ଯ୍ୟ ମାଧୁର୍ଯ୍ୟ ପୁଣି ସୌନ୍ଦର୍ଯ୍ୟ ମନ୍ଦିରେ ।
ଶିଳ୍ପ-ଅଳଙ୍କାର ବହୁ ନାହିଁ ଦେଉଳର,
ସରଳ ସୁନ୍ଦର ବେଶ ଆଡ଼ମ୍ବରହୀନ,
ଯଥା ଯୁଧିଷ୍ଠିରଙ୍କର ଆଦର୍ଶ ସ୍ୱଭାବ ।
ଅଦ୍ଭୁତ କୌଶଳ କରି ନିର୍ମିତ ମନ୍ଦିର,
ଭଗ୍ନଶିଳା ଯୋଡ଼ା ନୁହେ ଚୂନ ମସଲାରେ,
ଘର୍ଷଣେ ସଂଯୁକ୍ତ ତାହା, କାହିଁ ନୁହେ ଯୋଡ଼,(୧)
ସ୍ଥପତି ତୁମରି ଧନ୍ୟ, ଧନ୍ୟ ତା ଚାତୁରୀ !

(୧) ପଥର ଉପରେ ପଥର ଘଷି ହୋଇ ଯୋଡ଼ା ଯାଇଅଛି ।

ଉତ୍କ୍ଷିପ୍ତ ମନ୍ଦର ଯେସନ୍ତେ ମାୟାମନ୍ତ୍ର ବଳେ ।
ପଶିଲ ଚୈତ୍ୟଳେ ମୁହିଁ, ପଶିଲା ମାନସ
ସୁଦୂର ଅତୀତ ଯୁଗେ, ମାତ୍ର ଅଳ୍ପ କ୍ଷଣେ
ଝଲିଲା ବାସ୍ତବେ ଯେନ ଈଶ୍ୱରର ମୂର୍ତ୍ତି,
ମୂର୍ତ୍ତିର ଅକ୍ଷୟ ମଠ ଏ ମହା ଦେଉଳ ।
ଲୌହ ଦେହଳୀରେ ଖିଲ ଯାଉଁଳ କବାଟ
ଶିଳାବର୍ଗୀ, ଏବେ କେଣେ ଜବାଷିତ ତାହା ।
ଦ୍ୱାର ଊର୍ଦ୍ଧ୍ୱେ ବସିଅଛି ଗଣକ ଗୋଟିଏ,
ତହୁଁ ତଳେ ପାଇ ଯେପି ଅସ୍ପଷ୍ଟ ଉଷ୍ଟ୍ରବ ।
ମଧ୍ୟସ୍ଥଳେ ଅଧିଷ୍ଠିତ ଜଳମଗ୍ନ ହର,
ବାହାର ନିର୍ଝର ତହୁଁ, କର ପରିକ୍ରମା
ଶିବେ, ଧୂଳ ଯେଉଁ ଶିଳା ଶେଯେ, ବହୁଛନ୍ଦେ
ଗାଇଣ ମନ୍ଦ୍ରମନ୍ଥର ଲଘୁ କଳ ସ୍ୱରେ,
ଯାଉଛି ଚଳକୁ ବାହୁ କ୍ଷୁଦ୍ର ନଦୀରୂପେ,
ମିଶାଉଛି ପୂତ ନୀର ସ୍ୱର୍ଣ୍ଣମୁଦ୍ରା ସଙ୍ଗେ ।
ଦେଖିଲି ଊର୍ଦ୍ଧ୍ୱକୁ ଚାହିଁ, ମନ୍ଦିର ଭିତ୍ତିରେ
ସଂଯୋଜିତ ଶିଳାଲିପି ଏକାଦଶ ପଂକ୍ତି, (୧)
ଦେଉଳ, ନା ଇତିହାସ ଗ୍ରନ୍ଥଖଣ୍ଡ ଏହା ।

---

(୧) ତେର ଶତ ପଚରରେ ସ୍ୱଦେଶବଳ୍ଲ ସାତ ଯାହ ଲେଖାଏଁ ଅକ୍ଷର ଖୋଦିତ ହୋଇଅଛି ।

ଶୋଭତ ନାଗଗ୍ରୀବରେ ସେ ପ୍ରାଚୀନ ଲିପି,
ଧୂଳି ତୃଣେ ପୋତି ଯାଇ ହୋଇଛି ଅପାଠ୍ୟ,
କଷ୍ଟ କଷ୍ଟେ ପଢ଼ି ହେଲା ଏତିକି କେବଳ—
"ଶ୍ରୀଶ୍ରୀ ଗଜେନ୍ଦ୍ର ଦେବଃ," ଅଶୋକ ସହାୟେ(୧)
ତାଂବ୍ରପଲି (୨) ବିନିର୍ମିତ ଦେଉଳବେଷ୍ଟନୀ,
ପଡ଼ିଅଛି ଇତସ୍ତତଃ ଭଗ୍ନ ମୂର୍ତ୍ତି କେତେ,
ପ୍ରତେ ହୁଏ ଯେସନେ ତାହା ପ୍ରତିମା-ଶ୍ମଶାନ ।
ବହୁବର୍ଷେ ଶୈଳସ୍ତମ୍ଭ ହୋଇଛି ପ୍ରୋଥିତ,
ଧନ୍ୟ ଅଣି ବନ୍ୟ ବ୍ୟାଘ୍ର ଶାର-ବ୍ୟାଘ୍ର ଗ୍ରାମ
ବନ୍ଧୁଥିଲେ ବାନ୍ଧ ତହିଁ ପରମ କୌତୁକେ;
ଶଉଦିକ ମୃଗବାଣୀ ସାକ୍ଷ ଦିଏ ତାର ।
ଅନନ୍ତର ବସିଲି ମୁଁ ଅସି ଝରଣରେ
ପ୍ରବଳ-ଶରତ ସ୍ନିଗ୍ଧ ଗାଇବ ଅସରେ, (୩)
ମିଶିଗଲା ଝର ସ୍ରୋତେ ମୋ ଅନନ୍ତ-ସ୍ରୋତ,
ମାଝ ମୁକ୍ତି-ସ୍ରୋତ ଭରେ ବହିଲା ଭଜାଣି ।

---

(୧) ଏକାଦଶ ଖ୍ରୀଷ୍ଟାବ୍ଦ ମଧ୍ୟରେ ଗେଙ୍ଗରାଜା ରାଜତ୍ୱ କରୁଥିଲେ । ସମ୍ଭବତଃ ତାହାଙ୍କଦ୍ୱାରା ଏହି ଦେଉଳ ନିର୍ମିତ ହୋଇଥିବ ।

(୨) ଦେଉଳର ବେଢ଼ା ୭ଖଣ୍ଡ ବଣାଳ ପ୍ରସ୍ତରରେ ନିର୍ମିତ । ସେଥିମଧ୍ୟରୁ ଖଣ୍ଡିଏ ଉପର କଂସା ଭଳି ବାଜେ । ପ୍ରତ୍ୟେକ ପ୍ରସ୍ତରର ଦୈର୍ଘ୍ୟ ୧୦ ହାତ ଓ ଉଚ୍ଚତା ୩ ହାତ ।

(୩) ଏକପ୍ରକାର ଘାସ ଶେଫାଳି । ଏହା ଶରତ୍ ଋତୁ ଦ୍ୟୋତକ ।

## ପଞ୍ଚମ ସର୍ଗ ।

ତୁ ଜଳେ ଧର୍ମରାଜ ମହାପ୍ରେକ୍ଷାବାନ
ଭାରତ-ଅର୍ଦ୍ଧାଂଶ-ଜ୍ୟୋତ୍ସ୍ନା, ଭାରତ ଜୀବନ,
ଯାହାଙ୍କ ପବିତ୍ର ନାମ କରେ ସମୁଜ୍ଜ୍ୱଳ
ନିରାଶ୍ୟ-ପାରଦର୍ଶୀ ଜାଜ୍ୱଲ୍ୟ ଜୀବନେ,
ସେ ରାଜର୍ଷି ଯୁଧିଷ୍ଠିର କୌରବ-ଗୌରବ
କରଣ ତର୍ପଣ ସ୍ନାନ ମଣୁଥିଲେ ସୁଖ ।
ସମ୍ରାଜ୍ଞୀ ଯାଜ୍ଞସେନୀ, କାନ୍ତି-ଖଣି-ମଣି,
ଯାହାଙ୍କର ପାତିବ୍ରତ୍ୟ-ପ୍ରଚଣ୍ଡ-ଅନଳେ
ଦଗ୍ଧ ହେଲା କୁରୁକୁଳ, ସେହି ତପସ୍ୱିନୀ
ଅବଗାହି ଏ ସଲିଳେ, ବହନ୍ତି ଝରେ
ଲଭି ବହୁ ପୁଣ୍ୟାର୍ଥ ସୌଭାଗ୍ୟ ପ୍ରଦାନ ।
ଶ୍ୱାପଦେ ସଂହାର ଭୀମ ରକ୍ତ-ଲିପ୍ତ-ଗଦା
ଧୋଇଥିଲେ ଏ ସଲିଳେ ଗତ ପୁଣ୍ୟଯୁଗେ ।
ଏହିରୂପେ କେତେ ସ୍ମୃତି ଲୁଚି ସ୍ରୋତଜଳେ
ଭୁଲିଅଛି କେଉଁ, ସେହି ସ୍ମୃତି ଉପରେ ଅର୍ପି
ଅର୍ଘ୍ୟ ତପ୍ତ ଶ୍ୱାସ, ତହୁଁ ଉଠିଲି ବହନେ ।
ଏ ମଧ୍ୟେ ଗଲାଣି ଚାଲି କେତେକେତେ ଦିନ,
ନ ପାରଇ ଜାଣି ତାହା ସୁଖ ଦୁଃଖେ ମାତ,
ସୁଖ ଦିନ ବଡ଼ ଲଘୁ ଶୀଘ୍ର ଦିନ ବଳ,
ଯହିଁ ଯହିଁ ଚାଲିଯାଏ କେଉଁ ବେଗେ କାହିଁ ।

ମହେନ୍ଦ୍ର ।

ଏଣେ ପ୍ରକୃତିର ଏକ ଅଶାନ୍ତ ଉଦ୍‌ବେଗ,
ନଭଯାନ୍ତେ ରଥରୂପ ସୁବର୍ଣ୍ଣ ଦନ୍ତୁର
ଖେଳାଉଛେ, ଲୁଚିଗଲା ଶଶୀ ଅନ୍ଧକାରେ,
ତହୁଁ ତରତରେ ଧନ୍ଦା ପ୍ରକୃତି ସୁନ୍ଦରୀ
ଜାଳିଦେଲା କୋଟି କୋଟି ତାରକା-ପ୍ରଦୀପ,
ମାତ୍ର ତହିଁ ହେଲା ନାହିଁ ସୃଷ୍ଟି ଆଲୋକିତ ।
ଛଳେଦେଇଁ ଶରତ ନୋହୁ ପ୍ରଦୀପଜ୍ୱାଳିକା
ଜାଳିଦେଲା ଅର୍ଦ୍ଧ ପୂର୍ଣ୍ଣ ଚନ୍ଦ୍ର ଦୀପାବଳୀ,
ତଥାପି ଦିବ୍ୟରୂପ ନ ହେଲା ଆଲୋକ;
ଶେଷେ ହେଲେ ପ୍ରକୃତିଣୀ ତିମିର ବାହନେ,
ପ୍ରକୃତି-ନଗର ଯୋଧା ଜଣାଇଲା ଜାଣ
କୌଶିକ ଜାଳୁଅ, ଝଡ ଖର ତରୁଣିରୁ,
ହେଲାକ ସୃଷ୍ଟିରେ ଦୃଷ୍ଟ ଯବନପାତ,
ଅସିଲ ବାହୁନ୍ତି ତହୁଁ "ମହେନ୍ଦ୍ର ଅସ୍ତମେ" ।



## ଷଷ୍ଠ ସର୍ଗ ।



ଯାମିନୀ ଚତୁର୍ଥ ଯାମେ ବସିଲେ ଅଳନ୍ଦେ,
ନୀରବ ନିସ୍ତବ୍ଧ ସୃଷ୍ଟି, ଗିରି ସମୀରଣ
ବହୁ ଆସି ଥରେ ଥରେ ଝିରିଝିରି ସ୍ୱରେ
ଯାଉଅଛି ଚୁମ୍ବି ଶ୍ରେସ୍ୱ ରସି ଦର୍ପଣରେ
ଉତ୍କୃଷ୍ଟ ସୌନ୍ଦର୍ଯ୍ୟା ସୁପ୍ତା ସୁମନାବଦନ ।
କୃଷ୍ଣାଷ୍ଟମୀ ଚନ୍ଦ୍ର, ଅସ୍ତ କେତେ ତଳେ ଯାଇ,
ଅଟାଳ୍ୟରୁ ଆସୁଅଛି ଦେଖି ଊର୍ଦ୍ଧ୍ୱମୁଖେ
ଚନ୍ଦ୍ରେ, ମାଙ୍କ କି ଆଶ୍ଚର୍ଯ୍ୟ, ଦେଖିଲଇଁ ଆଜ
ଦେହବଦନରେ, ତେବେ କି ମହେନ୍ଦ୍ର ସାନୁ
ଚନ୍ଦ୍ରଲୋକ ଭେଦ କରି ଉଠିଛି ଉପରେ ?
ଲୋକାଲୋକ ଗିରି (୧) ଶୋଭା ଧରିଲା ମହେନ୍ଦ୍ର,
ପୂର୍ବପାର୍ଶ୍ୱ ଚନ୍ଦ୍ରକର, ପଶ୍ଚିମ ଅନ୍ଧାର ।
ଚନ୍ଦ୍ର ଆସି ଗିରି ଶିର ମଣ୍ଡନ୍ତା ଯଦ୍ୟପି,
ହୁଅନ୍ତା ସାର୍ଥକ ହର ପାର୍ବତୀ ଉପମା,
ମାତ ଆସୁଂ ନାହିଁ ଶଶୀ, ସ୍ୱଚ୍ଛ ମଣି ଶୋଭା ।

---

(୧) ସୃଷ୍ଟିର ସୀମାନ୍ତ ପର୍ବତ । ଏହି ପର୍ବତର ଏକପାର୍ଶ୍ୱରେ ଚନ୍ଦ୍ରକର ଏବଂ ଅନ୍ୟ ପାର୍ଶ୍ୱରେ ଅନ୍ଧକାର ।

## ମହେନ୍ଦ୍ର ।

ନ ଅସି ମହେନ୍ଦ୍ର କଭ, ଲକ୍ଷ ମେଘ ପଛେ
ଅରେ ଥରେ ମୁଣ୍ଡ ଟେକ ଗର୍ଜୁଛ ସଦର୍ପେ ।
ନନ୍ଦ ଚନ୍ଦ୍ର ଦେଖି ହୁଏ ଏ ଭାବ ଉଦୟ—
କିବା ଏହା ବିଳାସିନୀ ସୁରବାଳାଙ୍କର
ଗଜଦନ୍ତବିନିର୍ମିତ ବିହାର-ତୋରଣ
ଲମ୍ବେ ନନ୍ଦ-ପାତ୍ରବାରେ ? ରଚି ନାହିଁ ଶିଳ୍ପୀ
ହସ୍ତରେ ଏ ଚଗ ଶ୍ରେଣୀ ଶସ୍ତ୍ର ସାହାଯ୍ୟରେ,
ଅଲ୍ପ କ୍ଷମତାବନ୍ତ ସେ ମହାଶିଳ୍ପିର
କଳ୍ପନା ନିଷ୍ଫଳ ହୋଇ ଯାଇଅଛି ଚପି,
ଗେଳୁଅଛି ତା ଉପରେ ଅମର ମହିମା ।
କଲେ ମିଣ୍ଟି ମିଣ୍ଟି ତାରା, ଯଥା ମୁମୂର୍ଷୁର
ଅପନ୍ନ ନିର୍ବାଣ କ୍ଷୀଣ ପ୍ରାଣ-ଦୀପଶିଖା ।
କେହୁ ଅବା ନକ୍ଷତ୍ର ବେଗେ ଯାଉଅଛି ଛୁଡ଼ି,
କେହୁ ବାରମ୍ବାର ବୁଡ଼ି ଉଠେ ବାରମ୍ବାର,
ଧାର୍ମିକର ମୃତ୍ୟୁ ଥରେ, ମାତ୍ର ପାତକର
ମରଣ ଅନେକ ଥର, ଦୃଷ୍ଟାନ୍ତ ଏହାର
ଦେଖାନ୍ତି କି ମାନବଙ୍କୁ ମହାଶୂନ୍ୟେ ଥାଇ ?
ମହେନ୍ଦ୍ରରୁ ଧାଡ଼ି ବାନ୍ଧି ବାହାରି ବାଦଲ .
ଝରନ୍ତି ସରଳ ରଥ୍ୟା ସ୍ଫଟିକ ପାଷାଣେ,
ମହେନ୍ଦ୍ର-ଶୁଭ୍ରାଙ୍ଗ-ଭୂଷା ମହେନ୍ଦ୍ର-ମହିଷୀ

ଏହି ପଥେ ରଜେ ହେବେ ମହୋଦଧି ଯତନେ
ସଜନୀ ଗହଣେ ପ୍ରାତେ, ବହୁଳ ପ୍ରମୋଦେ ।
ପାରଦ ଅଚଳ ପ୍ରାୟ ଦିଶୁଛି ସାଗର,
ଖେଳୁଛି ସନ୍ତରି ତହିଁ ଚନ୍ଦ୍ରିକାସୁନ୍ଦରୀ;
ଜଳୁଛି ଆଲୋକମାଳ ମତ୍ସ୍ୟଜୀବୀ ନାବେ,
ଭାସେ କି ଅନଳ ଫେନ ପୁଞ୍ଜି ପୁଞ୍ଜି ହୋଇ,
ଅଥବା ନକ୍ଷତ୍ରେ ଉଦେ ସହସ୍ର ଦୀପିକା !
ଆସିଛି ସମୁଦ୍ର ଘୁଞ୍ଚି ମହେନ୍ଦ୍ର ପାଖକୁ, (୧)
ଶ୍ୱଶୁର ଜାମାତା ମଧ୍ୟେ କି ଗୂଢ଼ ମନ୍ତ୍ରଣା
ଲାଗିଛି ରଜନୀ ଯାକ, ଜଣକର ଭାଷା
ଭୀଷଣ-ଗମ୍ଭୀର ଘୋର କୋଲାହଳମୟ,
ଅପରର ମୌନ ଭାଷା, ଏ ବେନି ମିଶ୍ରଣେ
ଉପୁଜି ବିଶିଷ୍ଟ ଭାବ, ନ ଧରି ଧରାରେ
ଯାଉଛି ଉର୍ଦ୍ଧ୍ୱକୁ ଉଠି, ମିଶୁଛି ଶୂନ୍ୟରେ,
ସେ ଅନନ୍ତ ମହାର୍ଣ୍ଣବ, ନୁହେ ଅଧିଗତ
ଜଗତର ସର୍ବଶ୍ରେଷ୍ଠ କବି କଳ୍ପନାର ।

---

(୧) ଏ ଦୃଶ୍ୟ ବଡ଼ ଚିତ୍ତୋନ୍ମାଦକ । ରାତ୍ରିରେ ସମୁଦ୍ରକୁ ମହେନ୍ଦ୍ରର ପାର୍ଶ୍ୱବର୍ତ୍ତୀ ଦେଖାଯାଏ । ମାତ୍ର ରାତି ପାହିବା ସମୟରେ ଅନ୍ଧାର ସଙ୍ଗେ ସଙ୍ଗେ ସମୁଦ୍ର ଦୂରକୁ ଘୁଞ୍ଚିଗଲା ଭଳି ବୋଧ ହୁଏ ।

## ମହେନ୍ଦ୍ର ।

ଦିଶୁଅଛି ବୈଦ୍ୟୁତିକ ଆଲୋକ (୧) ସ୍ୱଚ୍ଛରେ,
ଦିବସ୍ୟ ପ୍ରକଟ ଭାସ ଉଦେ ଦେଖ ପ୍ରାୟ ।
ଶୋଭେ ବୈଶ୍ୟଶେଖରର ମହେନ୍ଦ୍ର ତନୟା,
ତଥା ସ୍ୱର୍ଣ୍ଣମୁଦ୍ରା, ପ୍ରାଣପ୍ରିୟା ସଖୀ ତାର,
ପଙ୍କରୁ ଉଠାଇ ଯଥା ଭୁଜଙ୍ଗୀ ଯୁଗଳ
ଧାବନ୍ତି ଜଳଧି ମୁଖେ ଜଳପାନ ଆଶେ ।
ଅଥବା ପ୍ରକୃତିରୂପା ବ୍ରହ୍ମଦର୍ଶିନୀର
ପଦ୍ମ ନୟନ ଦ୍ୱୟରେ ସାଫଲ୍ୟ ଶୋଭତ ।

ବଳେ ଉଷାଦେବୀ ଏବେ, ଦିବସ-ଦୂତିକା
ଦୂର ଚକ୍ରବାଳ କୋଳେ, ଖେଳନ୍ତି ରଙ୍ଗରେ
ସିନ୍ଦୂର ତରଙ୍ଗମାଳା ପ୍ରାଚୀପୃଷ୍ଠେ ରଙ୍ଗେ,
ଖୋଲନ୍ତି ଓ ଅଦ୍ଧା, ରସକାବ୍ୟ-ପାରାବାରେ
ନବ ଅଳଙ୍କାର-ବାଗୀ, ଉଠି ସ୍ତରେ ସ୍ତରେ;
ଅଥବା ପିନ୍ଧାଇ ଦେଲେ ଅମର୍ତ୍ତ୍ୟ ଗହନା
ସିନ୍ଧୁଶିରେ ପ୍ରଣୟିର ପ୍ରବାଳ ମଣ୍ଡନ ।
ଆସିଲକ ଦଶି କ୍ରମେ ମୁକ୍ତ ପ୍ରକୃତିର
ସ୍ନିଗ୍ଧ ଶ୍ୟାମଳତ ଛବି, ପୂର୍ବଗନ୍ଧ ସିନ୍ଧୁ
ଧୀରେ ଧୀରେ ଯଥାସ୍ଥାନେ ଅନ୍ଧକାର ପଛ ।

(୧) ମଣ୍ଡଶା ନବରଙ୍ଗ ସଟୋଚ ଗ୍ୟାସାଲୋକ ।

ଏ ସମୟେ ମୋର ଯାତ୍ରା ସରିଥିଲେ ଯେବେ
ମହେନ୍ଦ୍ର ଦେବୋଚ ଚୂଡ଼ା ଦାରୁବ୍ରହ୍ମସମେ,
ଆଣିଲା ସମୀର ବନ୍ୟ ଅଳୁଫୁଲ ବାସ,
ରହିଲ ରୌଦ୍ରରେ, ଅଗ୍ରେ ଦିଶିଲା ପାଦପ,
ଉଚ୍ଚ ସେ ଥୋପାରେ ଶୋଭି ରଞ୍ଜିତ ସୁମନ,
ପାରିଜାତ ସ୍ତବକକୁ କରି ସମାବୃତ,
ଗଢ଼ିଛି କି ବନ୍ଧୁ, ଅହା, ସେ କୁସୁମ ତନୁ ।
ବିଶାଳ ପାଷାଣ ଯେସେ ଦିଶିଲା ଅଦୂରେ
ବିକ୍ଷିପ୍ତ ଅସଂଖ୍ୟ ଯଦ୍ର କ୍ଷୁଦ୍ର ଗଣ୍ଡଶିଳା,
ଗିରି ବାଳିକା ଏ ସାର ପ୍ରାତଃସ୍ନାନ ଅବା
ସ୍ୱର୍ଣ୍ଣମୁଦ୍ରା ସ୍ୱଚ୍ଛ ଜଳେ, ଯାଉଛନ୍ତି ସ୍ଥାପି
ଏ ସ୍ଥଳେ ବାଳୁକା ମୂର୍ତ୍ତି କ୍ରୀଡ଼ାରସେ ମାତ୍ର ।
ଅଥବା ଏ ଗିରିତପୀ ଆଶ୍ରମେ ପାଳିତ
ଶିଶୁ ବ୍ରହ୍ମଚାରୀକୁଳ ବସି ଏ ମଣ୍ଡପେ
ଅଛନ୍ତି ଗୀରବ-ଦେବ-ଅଧ୍ୟୟନେ ରତ ।
ସମ୍ମୁଖରେ କୁଳଦେବ, ବନ୍ଧୁତବର୍ଦ୍ଧନ, (୧)
ସୁବର୍ଣ୍ଣବର୍ଣ୍ଣିତ ଯଥା ଅଷ୍ଟବଜ୍ର ବପି,
ମହେନ୍ଦ୍ରର ନାସି ଭାର ପୃଷ୍ଠ ଉପର ।
ଉଠିଲ ମୁଁ ସେହି ପଥେ, ଅହୋ କି ସଙ୍କଟ,

(୧) ଏହି ପର୍ବତ ମହେନ୍ଦ୍ରର ଉତ୍ତରରେ ନାସି ରୂପେ ଅବସ୍ଥିତ ।

ମନ୍ଦିର ।

ପିଚ୍ଛିଳ ଦୁର୍ଗମ ପଥ ଉଠିଛୁ ଘର୍ଷଣେ,
ଊର୍ଦ୍ଧ୍ୱେ ତୁଙ୍ଗ ଚୂଡ଼ା, ନିମ୍ନେ ଗମ୍ଭୀର ପାତାଳ,
ଯାଉଥାଏ କମ୍ପି ପ୍ରତି ପଦ ନିକ୍ଷେପେ
ଯାତ୍ରିକଗଣଙ୍କ ଶ୍ରାନ୍ତ-ଅବଶ ପାଦ,
ହେଉଥାଏ ପ୍ରତେ ଯେହ୍ନେ ପଡ଼ିଲି ବା ଝଡ଼ି
ଦେହ-ବୃନ୍ତୁ ପ୍ରାଣ-ପୁଷ୍ପ, ଡାକୁଛି ଉପରୁ
ସ୍ୱପ୍ନ ଦେବାଳୟ ମୌନ ଇଙ୍ଗିତ ଆହ୍ୱାନେ,
ଶତ ବାଧା ଲଙ୍ଘି ଆଶା ଧାଉଁଛି ତା ପାଶେ,
ଏଣେ ବେଳବୃଦ୍ଧି ସଙ୍ଗେ ବଢ଼ୁଛି ଉଦ୍‌ବେଗ,
ଉଠାଉଛି ହାହାକାର ହୃଦୟ-ମନ୍ଦିରୁ
ଅଦମ୍ୟ ଅତୃପ୍ତି, ହେଲି ଛଟପଟ ଖାଲି ।
ନ ଚଳଇ ଯାନ ଆଉ, ଅନ୍ଧକଷ୍ଟେ ତହୁଁ
ଉଠାଇଲେ ସର୍ବେ ମୋତେ ବାନ୍ଧି କମ୍ବଳପାଶେ,(୧)
ଅନାହାରେ ଶେଷ ପ୍ରାୟ, ଭାବୁଛି ମୁଁ ଶେଷ
ଗିରିରାଜ ଗର୍ଭାଗାରୁ ଅମୂଲ୍ୟ ରତନ,
ସେହି ଅପରାଧେ ପଡ଼ି ଏ ବନ୍ଧନ ମୋର

(୧) କାଠଗୋଲ ହଳ୍ୟ ହୁରରେଡ଼ ସ୍ଥାନରେ ଉଠି ନ ହେବାରୁ ଖଳାସୀମାନେ ଲେଖକର ବର୍ଷ ଦେଶରେ ସାମୁକ୍ଷ ବାନ୍ଧ ଅତେ ଅତେ ଓହ୍ଲାଇଲେ । ଛଅଅ ହୁଇ ଜଣ ଉପରକୁ ଟେକିଲେ । ଆଉ ଦୁଇ ଜଣ ବାନ୍ଧ ଧରିଲେ । ଏହିପରି ପ୍ରାଣାନ୍ତକ କଷ୍ଟରେ ଶିଖରକୁ ଉଠିବାକୁ ହେଲା ।

## ଷଷ୍ଠ ସର୍ଗ ।

ଗୌରବ ଉତ୍ତାପୀ ତବ ବାହକ ହସ୍ତରେ ।
ମାତ ସାନ୍ତ୍ୱନ, ତୋର ବୃଥା ଏ ଧାରଣା,
ସେବକ ଶ୍ରେଷ୍ଠର ଭାଗ୍ୟ ତାହିଁ କି ମୋଦର,
ଚିହ୍ନି ଜାଣେ ନାହିଁ ଭବ୍, ହଜବ କେମନ୍ତେ,
ଭୁଲୁଛି ମୁଁ ଶିଶୁ ପ୍ରାୟ, ଦେଖୁଛି ଯା ଭଳ
ଲାଗିଛି ତାହାଙ୍କୁ ସବୁ ମାଙ୍କନାଏ ଖେଳା,
ମାତ ବୁଝି ପାରୁ ନାହିଁ ଏ ମର୍ମ କାହାର ।
ଶୈଳମଣି, ଏ ମଧୁର ତୋହ ଦନ୍ତ ଶାନ୍ତି,
ହୋଇଥାନ୍ତି ଷଡ଼ଦେବ ଯଦି ତୋ ବଞ୍ଚନେ,
ମଣନ୍ତୁ ସେ ଦଣ୍ଡକୁ ମୁଁ ଅଧିକେ ମଧୁର,
ବହନ୍ତୁ ପାଉଡ଼େ ତାକୁ ତୋହ ସ୍ଥଳରୂପେ,
ଭୁଞ୍ଜନ୍ତୁ ଏ ମର ଭଟେ୍ୟ ଅମର ସୌଭାଗ୍ୟ ।
ଦେଶ ଦେଶ ତୋ ମାଧୁରୀ ମହ ତୋହ କୋଳେ
ଜନମିଲେ ପଶୁ ହୋଇ ତୋହ କଳେବରେ,
ତାହା ସୁଦ୍ଧା ନରଭାଗ୍ୟେ ପରମ କଲ୍ୟାଣ ।
ଉଠିଲ ଶିଖରେ, ଅହୋ, ମହେନ୍ଦ୍ରର ଏ ତ
ବିପୁଳ ବକ୍ଷୁତ, କିବା ରୁଦ୍ରକାନ୍ତ ବେଶ,
ସେ ଅନନ୍ତ ରୁଦ୍ରତାର ସମ୍ପୂର୍ଣ୍ଣ ସଜ୍ଜାରେ
ଭଲ ଅସ୍ତ୍ରବିସର୍ଜନ କ୍ଷଣେ, କାହାର ଏ
ସପ୍ତତଳ ଛବଛଲ ଖାଇଁ ପ୍ରାସାଦ,

ଅନେକତ୍ର ।

ସଂସାରର ଝଞ୍ଜାବାତେ ଢାଳଦେଇ ଦେହ
କରୁଛ କାଳକୁ ଘନ୍ତ୍ର ତତ୍ତ୍ୱ ପରିହାସ ।
ପୁଣି ଜନ୍ମେ ଏ କି ଦୃଶ୍ୟ, ଦକ୍ଷିଣୋତ୍ତରର
କି ସଜୀବ ମାନଚିତ୍ର ରହିଛି ବିସ୍ତୃତ,
ବରିଷ୍ଠ ସ୍ରଷ୍ଟାଏ ସୃଷ୍ଟି ସୌନ୍ଦର୍ଯ୍ୟ-ସାହିତ୍ୟେ ।
ଉଚ ଶିରେ ଗିରିମାଳ, ପୂର୍ବରେ ସାଗର,
ମର୍କତ ବଳୟମୁକ୍ତ ଚରଣ ମୁକୁଳା
ରଖିଛି କି ବନଶିଳ୍ପୀ ସୃଷ୍ଟିଦେବାପାଇଁ !
ସ୍ତରେ ସ୍ତରେ ଗିରିମାଳା ଉଚ୍ଚ ପଛେ ପଛେ
ମିଶାଇଛି ଦୂରେ ନଭ ମେଦିନୀର ସୀମା,
ଉତ୍ତାଳ ତରଙ୍ଗମୟ ନୀଳ ସମୁଦ୍ରର
କାନ୍ତ (୧) ମାଧୁର୍ଯ୍ୟଚିତ୍ର କିବା ରହିଛି ବିସ୍ତୃତ,
ଅଥବା ସେ ଉଦଧିର ମାଳିକ ସୋପାନ,
କିମ୍ବା ବ୍ୟୋମ-ଯୋଗୀ ଦୃଷ୍ଟ ଧୂସରିତ ଭାଲେ
ଚିତଳୀ ଚନ୍ଦନ-ଗଙ୍ଗାମୃତ୍ତିକା ଅଙ୍କିତ,
ଜଳୁବା ବସୁଛି ପୂର୍ଣ ଭୂମିରୀ ହୃଦୟର
ବେଦନାର ଘନ ଦାଗ, ଲୁପ୍ତରେଖା ପ୍ରାୟ ।
ଝଞ୍ଜ ବକ୍ଷେ ବେଢେ ଗିରି, ଢେଉ ଶୀର୍ଣପ୍ରଭ;
ଶୀର୍ଣପ୍ରଭ ଯଥା, ହାୟ, ଭଗ୍ନ ହୃଦେ ଆଶା ।

(୧) ବନମୟ ।

## ଷଷ୍ଠ ସର୍ଗ ।

ଦଣ୍ଡ଼ ତଟର ସ୍ୱଚ୍ଛ ଶୋଭ୍ର-ଉଜ୍ଜ୍ୱଳା
ଗିରି-ଗଣ୍ଡକଙ୍କ, ଶୈଳ ସାତ ଭଉଣୀଙ୍କ
ଶୋଭେ ତାର ନୈସର୍ଗିକ ସୀମାବାଡ଼ ରୂପେ,
ଷଡ଼ଦଳ-ପଦ୍ମଲା ଚୈତନ୍ୟ ତା ପାଶେ । (୧)
ଦକ୍ଷିଣ ପାରଳା, ଗଙ୍ଗବଂଶ ରାଜଧାନୀ
ଚନ୍ଦନଶୀତଳା ମହୀ(୨), ଶୋଭେ ଶିରେ ତାର
ତୈଲଙ୍ଗୀୟ ବନ୍ଧ ଶୋଭା ପ୍ରାସ୍ୱେକ ଅଙ୍ଗସ୍ଥ । (୩)
ଦୂରେ ଦିଶେ ସ୍ୱର୍ଣ୍ଣଗିରି ଉଦୟଗିରି ବେଣୀ,(୪)
ଯଥା ଦୃପ୍ତ ଦାନବର ରୂପବନ୍ତ ଦେହ,
ଅମ୍ବରରେ ପ୍ରଭାଫଳେ ଅସ୍ନାନିର୍ବରଣୀ ।
ଭେଦେ ସୁର ଭେଦ ଦଶେ ରୁଙ୍ଗ ମହେନ୍ଦ୍ର(୫)
ନଶିଳ ଉତ୍କଳ ମଧ୍ୟେ ଗିରିକୁଳ-ଗୁରୁ,
ଦନାନ୍ତେ ବାରୁଣୀ ଯାକୁ ନନ୍ଦିଙ୍ଘ ନଦ
ଅସ୍ତ୍ରୋଳୁଷ ବଣରୂପ ମାଣିକ୍ୟ ଥାଳୀରେ,

---

(୧) ଚୈତନ୍ୟରେ ଶ୍ୱେତ ଶତଦଳପୁଷ୍ପ ଶୈଶାଳ ସରୋବର ଅଛି ।
(୨) ଭାରତର ଚନ୍ଦନ ଶିଖରେ ଚନ୍ଦନ ଗଛ ଏବାର ପ୍ରଭାବ ଅଛି ।
(୩) ଅତସ୍ୱପିର ଭାରତର ସଙ୍ଗୋତ ଶର୍ତ୍ତ ।
(୪) ଦେଗୁର୍ଣ୍ଣୀ ମାଳର ସର୍ବପ୍ରଧାନ ଶବତତ୍ତ୍ୱ ।
(୫) ପ୍ରାରତବ ଉତ୍କଳର ସର୍ବଶ୍ରେଷ୍ଠ ଶୃଙ୍ଗ । ଏହା ଭାରତଦେଗୁର୍ଣ୍ଣୀ ମାଳରେ ଅବସ୍ଥିତ ।

ଯହିଁ ତପ୍ତପାଣି କୁଣ୍ଡେ (୧) ଶୀତେ ଅନନ୍ତେ
ବହନ୍ତି ପରମାନନ୍ଦେ ସଲିଳ-ଭଣ୍ଡାର,
ଅଙ୍ଗଭସ୍ମ ଚତୁଃସମ (୨) ମିଳି କୁଣ୍ଡଜଳେ
ଜନନ୍ତି ବହୁତ ତାକୁ ଗନ୍ଧେ ରୂପେ ସ୍ୱାଦେ,
ଗିରିଚକ୍ରବର୍ତ୍ତୀ ଯେଣୁ, ତେଣୁ ପ୍ରସ୍ରବାଳେ
ଲଭିଅଛି ସମ୍ମାନର ସ୍ୱର୍ଣ୍ଣ ସିଂହାସନ,
ସୌନ୍ଦର୍ଯ୍ୟକୁଞ୍ଜ, ବନ୍ୟଦଶ, ଜଳସ୍ରୋତ ତାହାର
ଭୂର୍ଜ୍ଜନା (୩) ପ୍ରବାଦେ ଦକ୍ଷ ବ୍ୟାଖ୍ୟାତ ପୁରେ ।
ସ୍ୱଦେଶସ୍ଥ (୪) ଶୁଭ୍ରମଠ ତୋଳନ୍ତି ସ୍ୱହସ୍ତେ
ଅର୍ଦ୍ଧ ନମସ୍ତ ଯୋଗ ସିଦ୍ଧ ଗର୍ବେ ଯଥା,
ବ୍ୟାଘ୍ର ମୂରଲୀ ଯହିଁ ବଂଶିକୁଞ୍ଜାକୂଳେ
ଲକ୍ଷ୍ମୀରୂପୀ ଲକ୍ଷ୍ମୀଶିବ ମୋହନେ ଅସରେ
ଏ ଗଞ୍ଜାମ-ବ୍ରଜଧାମେ, ମହାମହୋତ୍ସବେ ।
ଦୃଷ୍ଟଅଛି ବଂଶୀମାଳ—ବଂଶିକୁଞ୍ଜାତୀତ (୫)

---

(୧) ସଂସ୍କୃତ ପର୍ବତର ଅଧିତ୍ୟକାରେ 'ତପ୍ତପାଣି' ନାମରେ ଗନ୍ଧକ-ବର୍ଣ୍ଣିତ ଉଷ୍ଣ ପ୍ରସ୍ରବଣ ଅଛି ।

(୨) ଚନ୍ଦନ, ଅଗୁରୁ, କସ୍ତୁରୀ, କୁଙ୍କୁମ ।

(୩) ଅପବାଦ ।

(୪) ଧର୍ମବୀର ଗଞ୍ଜାମ ଚକ୍ରବର୍ତ୍ତୀ ବଂଶ ।

(୫) ବଂଶୀମାଳ ଗୋପ ବଂଶର ଗର୍ବରେ ଅବସ୍ଥିତ ।

(ଦ୍ୱିଷି ପ୍ରାନ୍ତ ସୁଗମ୍ଭୀର, ଉଚ୍ଚଳ ଶୃଙ୍ଗୁଳ)
ଉତ୍କଳ ଗୃହିଣୀ ଥିଲା ସମୁଗ୍ନ ସ୍ୱପ୍ନେ ।
ନୃ ଷଣ୍ଢାର ଶିର ଝୁଣି ଗୃହିଁଲ୍ଲ ପଶ୍ଚାଏ
ଏଣେ ଚିଲ୍କା ଭୁଧସର (୧), ଭଞ୍ଜ କେଳଶୈଳ,
ଜନ୍ମି ଯହିଁ ଉତ୍କଳର ଜାଗ୍ରତ୍ର ନନ୍ଦନ
କବୀନ୍ଦ୍ର, ଉପେନ୍ଦ୍ର, ଭଞ୍ଜ ବାନ୍ଧୁଥିଲେ ସଦା
ଦ୍ୱାରସ ଦେଉଳେ ସଦା ଅମୃତ ମନୋହ ।
ପାର୍ଶ୍ୱେ ତାର ଅସ୍ତ୍ରଦୁର୍ଗ, ଯହିଁ ଶାଳବନ୍
ଝଙ୍କାରନ୍ତ୍ର ଭଲୁ, ଧୂନା, ମଧୁ, ଶୁକ ଶିଶୁ
ଦୁରନ୍ତ ଜଙ୍ଗଲକୁଳ, ଅକଳ୍ପ ନିର୍ଝର ।
ପାବର୍ତ୍ତ ସେ କାନ୍ତାରୁ ପଙ୍କୁ ପଦ୍ମ ଯଥା
କବିରତ୍ନ ବଳଦେବ ଜନ୍ମୀଥିଲେ ପ୍ରଣ୍ଣ
ଅନଶ୍ୱର, ଅମଳିନା, ସାହିତ୍ୟ ରାଜ୍ୟରେ,
ଉତ୍କଳ-ଭାରତୀ-କୁଞ୍ଜେ ଅମର ପିକ ସେ ।
ମର୍ଜିତ ପବିତ୍ରଆତ୍ମା ଶିଶିର "ମାଲୁଅ"
ଦଶେ ଯଥା ଲକ୍ଷଅଛୁ ମଞ୍ଜିସେ ସାରସ,
ନମ୍ରେ ତାର ଶକ୍ତି କୋଟ, ମର୍ଦ୍ଦିଶ୍ୱର ରାଜ୍ୟ,
ଦୁଆତାର ରୂପେ ଉଭେଁ ଯା ଲଗେ କମଳା,
ଜନ୍ମିଲନ୍ତ୍ର ପାତ୍ର ଯାକୁ ହୃଦୟେ ଧରେ ।

(୧) ବ୍ରହ୍ମପୁରସ୍ଥ ପର୍ବତ ।

ଉତ୍କଳ-ଅଳକା-ଟୀକା ଦିଶୁଛି ଚନ୍ଦ୍ରିକା,
କୋଟିପ୍ଲୁତ ବଳ୍ମିକ ଯାର ପୁଣ୍ୟ ନାମେ,
ବିଶ୍ୱକର୍ମା କୋଡ଼ି ପ୍ରାୟ ଅଭ୍ରସେ ଯାଚିଛା
ତରଳ ରଜତେ ପୂର୍ଣ୍ଣ, ଚାଲ ଛଟେ ଛାଡ଼ା
ଗଢ଼ିବ ବିଷାଣୀ ଭୂଷା—ଉତ୍କଳ ପକାଶେ ।
ଅଥବା ସେ ଦଧିଖଣ୍ଡ, ଦୁହିଁ କାମଧେନୁ
ବସାଇଛି ଦଧି ଦଧି, ସମୀର ମନ୍ଥନେ
ତ୍ରୌପାଶେ ଅଚ୍ଛେ ଫେନ—ସିନ୍ଧୁ ଲବଣାକ,
ପାଦ ଦୋଷେ ଘନ୍ତ୍ର ଲୁଣୀ ବିଲ୍ବତ ବିସ୍ୱାଦ ।
ଗର୍ଭେ ଠାବେ ଠାବେ ଶୈଳ, ଶାଳ ଦ୍ୱୀପପୁଞ୍ଜ,
ସଗ୍ରେବରେ ଗର୍ଜ୍ଜୁଥ କରନ୍ତି ଚ ସ୍ନାନ !
ଜଳ ଗିର ଶରଶୃଙ୍ଗ (୧), ଅନୁଭୁଙ୍ଗ ଶୃଙ୍ଗ,
ଅପାଦମସ୍ତକ ଦୋଳ ଭୁଜଙ୍ଗିକାଦ୍ରୁତ
ଅଇଷ୍ଟି ଭୂଲ ଶୈଳ ପ୍ରାୟ, ଅଥବା ସେ
ଛ ଟିକ-ଧର୍ମିତ ଶିବ, ଅଭ୍ରଷ୍ଟିକ୍ତ ସଦା
ଚଲଦାର ଲୀଳାମୟ ମହାତୀର୍ଥ ଶିରେ ।
ଚଣ୍ଡ୍ରାମ ସୌଭାଗ୍ୟଲକ୍ଷ୍ମୀ ବର ଆଶୀର୍ବାଦ
ବହୁଅଛି ନଦୀରୂପେ ବର୍ଷିଭୁଲ୍ଲା ନାମେ,

---

(୧) ଜଳୁତ ସ୍ତନ୍ତ୍ର ଜଳତ ।

ଦିଶେ ତା ନୂତନ ଶିରେ ତାରିଣୀ ଶିଖର, (୧)
ଅତି ଦୂର ହେଉ ହୁଏ ପ୍ରତୀତ ଏସନ,
ଜନ-ବାରିଧିରୁ ନୀର ଶୋଷୁଛି କି ଘନ ?
ଜଉଗଡ଼ (୨) ଭଗ୍ନସ୍ତୂପ ସ୍ମୃତି ବକ୍ଷ ତଳେ,
ସେହି ଭଗ୍ନସ୍ତୂପ ମଧ୍ୟେ ଅଛି ସମାଧିସ୍ଥ
ଗୌରବ ଯୁଗର ବହୁ ମୂଲ୍ୟବାନ ସ୍ମୃତି—
ସଂଖ୍ୟାତୀତ ଇତିବୃତ୍ତ ସ୍ୱର୍ଣ୍ଣ ଉପାଦାନ ।
ଜୟସନ୍ଧ, ତାଳଗୁଣ୍ଡ, ଜୋନ୍ନର, କମାଇ (୩)
ଚାହିଁ ଯାଉଛନ୍ତି ଦୂରୁ ପରିଚିତ ହେଉ ।
ପୂର୍ବେ ମଞ୍ଜୁଷାମଧ୍ୟେ—ବେତସକୁନ୍ତଳା,
ସୂକ୍ଷ୍ମ ଶିଳ୍ପକଳାମୟୀ, ଦେଖିଲେ ଯାହାର
ଗଜଦନ୍ତ, କାଷ୍ଠ, ସ୍ୱର୍ଣ୍ଣ, ମୃତ୍ତିକା ଶିଳ୍ପାଦି,
ସ୍ୱୟଂ ବିଶ୍ୱକର୍ମା ହୋଇ ଲଜ୍ଜା-ସଙ୍କୁଚିତ
ଧିକ୍କାରିବେ ନିଜେ ନିଜ ଅମର ପ୍ରତିଭା ।
ଶୋଭେ ଯାର ସଂମାର୍ଜିତ ମୁକୁର ସଂକାଶ

---

(୧) ପ୍ରଚଳିତ ନାମ ତାରତାରିଣୀ ପର୍ବତ । ସେଠାରେ ତାରା ଏବଂ ତାରିଣୀ ଦେବୀଙ୍କର ମନ୍ଦିର ଅଛି ।

(୨) ଜଉଗଡ଼ରେ ମହାତ୍ମା ଅଶୋକଙ୍କର ପ୍ରସ୍ତରଖୋଦିତ ଅନୁଶାସନ ଅଛି ।

(୩) କ୍ରମାନୁସାରେ ଜରଡ଼ା, ସୁରଙ୍ଗୀ, ଟିକିଟି ଓ ଜଳନ୍ତରାସ୍ଥ ପର୍ବତ ।

ସୀମା-ସମାକୀର୍ଣ୍ଣ ସ୍ୱଚ୍ଛ ଗୋପାଳ ସାଗର । (୧)
ଧନ୍ୟବନ୍ତ ମନ୍ତ୍ରୀ, ପୁଣ୍ୟବନ୍ତ, ଯଶୋବନ୍ତ,
ବସନ୍ତମଣି ମହାରଥ ମହେନ୍ଦ୍ର ଯାହାର,
କସ ତୁଳନୀୟ ତାର ସୌଭାଗ୍ୟ ସହିତେ ?
ରାଜଭକ୍ତି ସୁଧାସ୍ୱାଦ ତାର ନୃପକୁଳ,
ଜଗନ୍ନାଥ ରାଜମଣି ଦୁଷ୍ମାନ୍ତ ତହିଁର,
ଦେଖାଇ ସ୍ୱଗୁଣ ସଏ, ସେହି ଗୁଣ ମୂଲ୍ୟେ
ଲଭିଥିଲେ ରାଜଦ୍ୱାରୁ ଗୌରବ ଉପାଧି
ଗଞ୍ଜାମ ଦ୍ୱିଜନ୍ୟ ମଧ୍ୟେ ସର୍ବ ପ୍ରଥମରେ । (୨)
ମଞ୍ଜୁଷାର ସିଂହାସନ ସୁଭାବ ପଦକ,
ରାଜର୍ଷି ବାସୁଦେବ ପୁଣ୍ୟ ପରଶରେ
ହୋଇଛି ସେ ଦେବାଳୟ, ନବ ଯାଗବେଦୀ,
ପଦକ ଜାହ୍ନବୀ ଜଳେ ମିଶିଛି ତୁଳସୀ । (୩)
ଭୂଷନ ସୌରଭ ପ୍ରାପ୍ତ କଲି ତାଙ୍କ ତନୁ

---

(୧) ମଞ୍ଜୁଷାଗଡ଼ର ଚତୁଃବର୍ତ୍ତୀ ପୁଷ୍କରିଣୀ । ଏହା ତୁଳରେ ଖାମୀ ଦ୍ୱୀପ ଅଛି ।

(୨) ମଞ୍ଜୁଷାର ଭୂତପୂର୍ବ ରାଜା ଜଗନ୍ନାଥ ରାଜମଣି ଦେବ ଗଞ୍ଜାମ ଜମିଦାର-ମାନଙ୍କ ମଧ୍ୟରେ ସର୍ବପ୍ରଥମ ଗବର୍ଣ୍ଣମେଣ୍ଟରୁ ସି, ଆଇ, ଇ, ସମ୍ମାନ ସୂଚକ ଉପାଧି ପ୍ରାପ୍ତ ହୋଇଥିଲେ । ଅଦ୍ୟାପି ଉକ୍ତ ଉପାଧି ଅନ୍ୟ କୌଣସି ଜମିଦାରଙ୍କ ଭାଗ୍ୟରେ ଘଟି ନାହିଁ । ମହାତ୍ମା ଜଗନ୍ନାଥ ରାଜମଣି ଦେବ ସି, ଆଇ, ଇ, ଉପାଧି ସହ 'ରାଜା' ଉପାଧି ମଧ୍ୟ ଲାଭ କରିଥିଲେ ।

(୩) ମହାତ୍ମା ବାସୁଦେବ ରାଜମଣି ଦେବ ବର୍ତ୍ତମାନ ଜମିଦାରଙ୍କର ପିତା

ଶ୍ରୀନିବାସ ରାଜମୂର୍ତ୍ତି, ମଣ୍ଡି ଇନ୍ଦ୍ର ରୂପ
ସେହୁ ପୁଣ୍ୟ ଦେବାଳୟ, ସେହୁ ପୁଣ୍ୟ ଦେଶ ।
ବେଦ ଶାସ୍ତ୍ରେ ପଣ୍ଡିତ ସେ—ବେଦେ, ଧନୁର୍ବେଦେ ବି,
ମଣନ୍ତି ସେ ମହାବଳେ ମାର୍ଜାର ଶାବକ ।

ବଶୁ ଛ ପ୍ରବଳେ ଏହୁ କାଣ୍ଡଗଲା ଚିର
ଭୀମସେନ ଶାନ୍ତି ଚନ୍ଦ୍ର ବହୁ କଳେବରେ । (୧)
ତଳେ ଲୁହାଙ୍ଗିହ ରାଜ୍ୟ, ସ୍ମରଣେ ଯା ନାମ
ବାଜ ଉଠେ ସ୍ମୃତି-ତାରେ ମର୍ମଭେଦୀ ତାନେ
ଦୂର ଅତୀତର ସେହୁ ବିଷାଦ-ସଙ୍ଗୀତ,
ଭୀଷଣ ରଣାନ୍ତେ ଯେବେ ପାଷଣ୍ଡ ଅହୁଏ
ନାଶିଲେ ନୃଶଂସେ, ପୁଣ୍ୟ ପୈଶାଚ ହବେ । (୨)
ଦଶେ ଶତାବ୍ଦୀ, ସପ୍ତ ଅଜଗର ପ୍ରାୟ,

---

ଥିଲା । ସେ ବହୁ ଶାସ୍ତ୍ରରେ ବିଶେଷତଃ ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ ।

(୧) ଭୀମ ଚାନ୍ଦ ନାଲ ଏହି ବଂଶର ପ୍ରତିଷ୍ଠାତା ଥିଲେ । ଅଦ୍ୟାପି ସେ ବଂଶ ବର୍ତ୍ତମାନ ଅଛି ।

(୨) ଏଠାରେ ବାଲହାର୍ଯ୍ୟ ନାଶକ ନାମରେ ଜଣେ ଅମାନୁଷୀ ବଳଶାଳୀ ରାକ୍ଷସ ଥିଲେ । ବଂଶର ଶଶାଙ୍କମଣ୍ଡଳମ୍ବୀ ସୋଟିଏ ଲତା ସାହାଯ୍ୟରେ ସେ ପ୍ରଚଣ୍ଡ ଶର୍ବର ଭୀଷଣ ଦେବବର୍ଣ୍ଣନର ଗମନ କରନ୍ତି । ଏବେ ସେ ଲତାର ଅଧ ଦୂର ଖର୍ଣ୍ଣକ ଉଠି ଥାଇ, ଏହି ସମ୍ପ୍ରତିର ଶତ୍ରୁମାନେ ଲତା ଭାଙ୍ଗି ବାର୍ଣ୍ଣ ଦେବାକୁ ସେ ଜଙ୍ଗଲର ଶରତ ଦେହାର ଶତ୍ରୁ ପ୍ରାପ୍ତ ହେବେ ।

ସନ୍ଦେଶ୍ର ।

ଭାଷୀ ଜୈବ ଯାତ୍ରାକାଳେ ଉତ୍କଳବାହନ,
ବାହୁଥିଲେ କଳା ଧଳା ଅଶ୍ୱ ତାହା ତଟେ
ଜଗ ଧଳ ବଳ ବେଳ—ଲୁପ୍ତ ବଳସ୍ୱନ ।
ଶସ୍ୟେ ବାଲୁଆ ସ୍ତୂପ, ଜାହକେଳି-ଗାଳ,
ବୋଇତ ଅଣ୍ଡସୃଷ୍ଟଳୀ, ସିନ୍ଧୁଗାମୀ ପୋତେ
ଶ୍ରାନ୍ତ କ୍ଲାନ୍ତ ହୋଇ ତହୁଁ ବହନ୍ତ ବିଶ୍ରାମ ।
ତା ପଛେ ଉଦ୍ୟାନଶ୍ରେଣୀ—ପାଦପବାନ୍ଧ,
ନୀଳମା ପ୍ରବାହ ଢାଲୁ ଯାଉଛୁ ସେ ତାହିଁ
ନୀଳ ଚକ୍ରବାଳ ବେଢ ଧଡରେ ଧଡରେ;
ଶୀତ ପ୍ରାତେ ହଂସଯୂଥେ ଉଡ଼ନ୍ତି ଯହିଁ
ଗମନ୍ତି ଚନ୍ଦ୍ରିକାମୁସେ ମୃଦୁ କଳରବେ,
ମୂକ ନବେ ସୃଷ୍ଟଶୂନ୍ୟ ନସ୍ତମ୍ଭ ତୋରଣ ।
ଉଦ୍ୟାନର ପୃଷ୍ଠଦେଶେ ବିସ୍ତୃତ ସାଗର,
ସୁହିଁ ଏ ଦର୍ଶନ-ଯନ୍ତ୍ର ସଂଯୋଗି ନୟନେ, (୧),
ଉତ୍ତାଳ ତରଙ୍ଗାକୁଳ ଗର୍ବ ସଦା ତାର,
ଅହୋ, ଏ ଗାମ୍ଭୀର୍ଯ୍ୟ, ଏବା ଦର୍ପପ୍ରବଣତା —
କବା ଅବସାଦଶକ୍ତି ଉତ୍ତ ଉତ୍ତେଜନା—
ଏ ବକ୍ଷ ଅନ୍ତହୃଦ ଉଚ୍ଛ୍ୱସିତ ହାସ୍ୟ,
ହସି ହସି ଅନ୍ତରର ଫେନୋଦ୍ଗାର ଛଳେ

---

(୧) ଦୂରବୀକ୍ଷଣ ଯନ୍ତ୍ର ।

ଯାଉଛ ବେଗରେ ଗଙ୍ଗା ହର୍ଷ ଅସମ୍ଭାଳେ,
ବସ୍ତ୍ରାଦ ଲହରୀ-କର ଚୁମ୍ବି ଚୁମ୍ବି ମୋର,
ଢାଳି ଢାଳି ପୁଷ୍ପାଞ୍ଜଳି, ଅପେ ସିନ୍ଧୁ ଧାଇଁ
ବେଗେ ଆଲିଙ୍ଗନ ଆଶେ, ମାତ୍ର ବେଗ ତାକୁ
ଦେଉଛ ଫେରୁ ଠେଲି, ତଥାପି ସାଗର
ପଙ୍କ ଉଠି ପ୍ରଧାବିତ ବେଳା ଅଭିମୁଖେ ।
ଏକର ଉଦ୍ଧୃତ ସ୍ନେହ, ଅନୁରକ୍ତ ଆଶା,
ପ୍ରାଣର ପ୍ରଣୟବୋଳା ଆକୁଳ ଆହ୍ୱାନ,
ସକଳ କରୁଛ ବ୍ୟର୍ଥ—ଅବଜ୍ଞା ଆଦର ।
ସିନ୍ଧୁସୁତ ନୂଆଏ ଜଳର ମାନବ—
ବାହୁଛନ୍ତି କାଇ ବସି ଡିଙ୍ଗାକାଠି ପୃଷ୍ଠେ, (୧)
ଦିଶୁଛନ୍ତି ଦୂରୁ କ୍ଷୁଦ୍ର ପାଣିକୁଆ ପ୍ରାୟ,
କ୍ଷଣେ କ୍ଷଣେ ମଗ୍ନ ପୁଣି କ୍ଷଣେ ଭାସମାନ,
ଆସ୍ଥା ଯଥା ଭବସିନ୍ଧୁ ନୀରେ, ଶମ୍ଭା ଯଥା
ମାନବ ହୃଦ୍‌ର ଭଗ୍ନ କାଳ-ପାଶବାରେ ।
ମଣ୍ଡିଛି ମଞ୍ଜୁଳେ ରମ୍ୟ ଲକ୍ଷ୍ନ-ଉଦ୍ୟାନ (୨)
ସ୍ୱର୍ଣ୍ଣମୁଦ୍ରା ସ୍ୱର୍ଣ୍ଣଘର, ବସନ୍ତ ନିବାସ,

---

(୧) ସମୁଦ୍ର ତଟାବାସୀ ତେଲିଙ୍ଗୀ ଜାତିର କାଠର ଡଙ୍ଗା ।
(୨) ଲକ୍ଷ୍ନଗର ବୋଇଷା । ଏହି ବୋଇଷାରେ ପୂର୍ବେ ଲକ୍ଷ୍ନଗରଙ୍କ ରହିବାର ସ୍ଥାନ ଥିଲା ।

## ମହେନ୍ଦ ।

ଚୁହଅନା, ନାଗେଶ୍ୱର, ଚମ୍ପକ, ବକୁଳ
କରନ୍ତ ଅତୁଳ ଛନ୍ଦେ—ସୌରଭ-ବାତୁଳ ।,
ଏଡୁପର ଦେଖେ ଗ୍ରାମ, ନଗର, ନବର,
କାନ୍ତାର, ପ୍ରାନ୍ତର, ନଦୀ, ତଡ଼ାଗ, ପର୍ବତ,
ଦର୍ଶିଛ ମହେନ୍ଦ୍ର-ଶିରୁ, ନାହିଁ ତା କଳନା;
ଅବହେଳେ କଣେ ତାହା ଦର୍ଶକ ଚକ୍ଷୁ ।



# ସପ୍ତମ ସର୍ଗ ।



ଘର୍ଘ ଘର୍ଘ ମାଡ଼ି ଆସି ଭୀଷଣ ଭୂକମ୍ପ
ଦୋହଲାଇଲା ସୃଷ୍ଟି ଶୋଭା, ଦୋହଲାଏ ଯେସନ
ସୁଶୋଭ ଶରଦ କାଳ ଇନ୍ଦ୍ରଧନୁ କାନ୍ତି,
ରମ୍ଭା ଯଥା ଅସ୍ପୃଷ୍ଟାପା ଦୋହଲାଏ ପ୍ରଭଞ୍ଜ ।
ଜଳ ସ୍ଥଳ ଗିରି ବନ ଆକାଶ ପୃଥିବୀ
ହେଲା ସବୁ ଏକାକାର, ଭଙ୍ଗୁର ମିଳନେ,
ପାଦ-ପଲ୍ଲବେ ମୂର୍ତ୍ତି ଭଜିଲା ପ୍ରଳୟ ।
ଆସିଲା ଭୂକମ୍ପ ପଛେ ଅନ୍ତଅସ୍ତ ଶୀତ,
ଦୁଷ୍କର୍ମର ଅନୁଗାମୀ ଦୁର୍ଗତି ଯେସନ,
ଢାକିଲା ଦନ୍ତରେ ଦନ୍ତ, ଶଙ୍କା ଉପଶାନ୍ତା
ଫାଟିଗଲା ଶୀତେ ଶଙ୍ଖ ପିଣି ପିଣି ହୋଇ,
ନେଇ ମୁଁ ସଦଳେ ଆସ୍ତା ଭ୍ରମ ଦେବାଳୟେ ।
ଗର୍ଜନା ଭଜନ ଯୋଗେ (୧) ଉତ୍ପାତ ଅନଳ
ଜାଳିଲେ ଶବରେ ଧୂମ, ଯେତେ ଦୋଳ ସଙ୍ଗେ
ପ୍ରଭୃତିର ଅଟ୍ଟାଳରୁ ଉଠିଲ ଉତ୍ପାତ ।
ମଗ୍ନ ହେଲେ ବଙ୍ଗଜ ପାପ-ଅନ୍ଧକାରେ,

---

(୧) ଅକାଳବୃଷ୍ଟି । ଏହି ଶବ୍ଦର ମୂଳ ୨୬ ଶ୍ଳୋକ ତାଠାରୁ ସର୍ବଶ ବଡ଼ର ଅଗ୍ନି ତାର ହୁଏ ।

ଧନ୍ୟ ତୁମ୍ଭ ଅବତାର ଦେଖାନ୍ତି ଯେସନ
ଅତ୍ୟୁଜ୍ଜ୍ୱଳ ଅଭିନବ ଧର୍ମର ଆଲୋକ,
ତେସନ ତୁମ୍ଭେଲ ଦେହ ପ୍ରଭୁ ପ୍ରଜା-ବନ୍ଧୁ
ଟଳିଲୁ ଖସାଇ ଦେଇ ଜ୍ୟୋତିର ପ୍ରପାତ
ପ୍ରଦାନଲେ ଯାମାନ୍ତରେ ଭୂଲୋକେ ପ୍ରଭାତ,
ଜଗ୍ଧ ତନୁଁ ମୁକ୍ତି ସ୍ନାନ କନକ-ଝରଣେ ।
ନ ଅଭୂତ ନ ଅଶ୍ରୁତ ମାନ୍ଧାତାର ଏହା,
ପ୍ରଭାତ ଉତ୍ତାରୁ ସନ୍ଧ୍ୟା, ତା ପଛେ ମଧ୍ୟାହ୍ନ,
ଶୀତ ପରେ ବର୍ଷା, ପୁଣି ବର୍ଷାନ୍ତେ ନିଦାଘ,
ସୀମାଗତ ସ୍ୱେଚ୍ଛାଗ୍ରହ ଏ ନ ପ୍ରକୃତିର,
କମ୍ପା ବପଶିତ ଉଗ୍ର ବଣ୍ଟାଳ ଗତି,
କାନ୍ତ ନଟନ ଏ ଦୃଶ୍ୟ, ଏହୁ ଦୃଶ୍ୟ ବିନା
ଜଗନ୍ତ ଏଠାର ଜନେ ପ୍ରାଣମୟ ସଦା,
ସେ ଜନ ମାନବ ଭୁଗେ ଦେବତାର ଦାନ ।
ବାହାର ଦେଉଳ ମଧ୍ୟ ଅସିଲ ବାହାରେ,
ସଗର୍ବେ ଶ୍ରୀମନ୍ତ ସ୍ଥାନ ଧନ୍ୟ ସେ ଦେଉଳ
ତୌଥାସ ଥାଉଁଲ ବପୁ, ଉଜ୍ଜ୍ୱଳ ମୌଳଶବେ,
ଦବଷ୍ଟ ଘସ୍ତ୍ରବ ପରେ ଦବଷ୍ଟ ଘତ୍ରର
ଥୂପ ହୋଇ ସେ ଦେଉଳ ହୋଇଛି ନର୍ମିତ,(୧)

(୧) ସ୍ୱର ଖଣ୍ଡ ଖଠର ଖଣ୍ଡରେ ଏଣ୍ଡ ଏ ଦଣ୍ଡ ଅଦେଶୀ ଖଠ୍ର ଖଣ୍ଡ



ଭୀମ ଦେବାଳୟ । (୮୪—୮୫ ପୃ.)



ସ୍ତରେ ସ୍ତରେ ଯେସନେ ବସ୍ତୁ ତୁଙ୍ଗ ଚିହ୍ନରୂପା
ଉଠନ୍ତି ସଜ୍ଜିତ ହୋଇ ଉପରେ ଉପରେ,
ବିପୁଳ ଅନନ୍ତ ତାର ଦିଏ ପରିଚୟ
ଶ୍ରମସେନ ଅମାନୁଷୀ ଶକ୍ତି, ବିଚମର ।
କାଳରୂପୀ ଧୂର୍ତ୍ତବସ୍ତୁ ବକ୍ର ଅଙ୍ଗନେ
ସେ ଦେଉଳ-ଲୌହସ୍ତମ୍ଭ ନୋହୁ ଚୂର୍ଣ୍ଣୀଭୂତ
ରହନ୍ତି ବିଦୀର୍ଣ୍ଣ ହୋଇ, ବଢଫଲ୍ଲବରେ । (୧)
ଥିଲା ତାହା ଚୂଳେ ପୂର୍ବେ ସୁବର୍ଣ୍ଣ କୃପାଣ,
ସାକ୍ଷ ତାର କିମ୍ବଦନ୍ତୀ, ମାତ୍ର କେଉଁ କାଳ
ହୃତ ତାହା କାହାଦ୍ୱାରା, ଅଜ୍ଞାତ ସେ କଥା ।
ହେ ହ୍ୱାସି ଦେଉଳ, ତାର ପଶ୍ଚିମ ଦୁଆର
ଧର୍ମାଧର୍ମ ପରୀକ୍ଷାର ସଙ୍କୀର୍ଣ୍ଣ ଅର୍ଗଳି । (୨)

---

ହୋଇ ଏହି ମନ୍ଦିର ନିର୍ମିତ ହୋଇଅଛି । ପ୍ରତି ପଥରର ଲମ୍ବା ୬ ହାତ, ଓସାର ୪ ହାତ ଓ ବହଳତା ୩ ହାତ । ସର୍ବୋପରିସ୍ଥ ପଥରର ଲମ୍ବା ୬ ହାତ, ଓସାର ୬ ହାତ ଏବଂ ବହଳତା ପ୍ରାୟ [illegible] ହାତ ।

(୧) ମନ୍ଦିରର ଉପରସ୍ଥ ପ୍ରସ୍ତର ବଜ୍ରପତନରେ ବିଦୀର୍ଣ୍ଣ ହୋଇଅଛି ।

(୨) ଶ୍ରୀମନ୍ଦିରର ପଶ୍ଚିମ ଦ୍ୱାର ପ୍ରାୟ ଏକ ଫୁଟ ଓସାର । ଏଥିରେ ମନୁଷ୍ୟ ପଶିବା ସହଜ ନୁହେଁ । ତଥାପି ଯାତ୍ରୀମାନେ ବସି ବସି କୌଶଳରେ ପାର ହୋଇଯାନ୍ତି । ପାପୀ ଏହି ଦ୍ୱାରରେ ଗଳି ପାରେ ନାହିଁ ବୋଲି ପ୍ରବାଦ ଅଛି । ପ୍ରବାଦ ସତ୍ୟ ହେଲେ ସ୍ଥୂଳକାୟ ମାତ୍ରେ ପାପୀ ହେବେ ଏଥିରେ ସନ୍ଦେହ ନାହିଁ ।



ନିବସନ୍ତି ସେ ମନ୍ଦିରେ ଗୋକର୍ଣ୍ଣେଶ୍ୱର ହର
ଶବର-ଅର୍ଚ୍ଚିତ, ନିତ୍ୟ ଶବରବାମାଏ
ପୂଜନ୍ତି ତାହାଙ୍କୁ ଅର୍ପି ବନ୍ୟ ଫୁଲ ଫଳ ।
ଏକନିଷ୍ଠ ସ୍ୱାମିଭକ୍ତ ଶବରସମାଜ,
ସ୍ୱାମୀନାମେ ଶ୍ରଦ୍ଧାବନ୍ତ, ମୁହଣେ ସେ ନାମ
ଲଭେ ସେ ଶରୀରେ ଯେତେ ସ୍ୱାମି ପରାକ୍ରମ ।
ବୀର ଜାତି, ବୁଝେ ସେହୁ ବୀରର ମହିମା,
ତେଣୁ ବୀରପୂଜା ତାର ଜୀବନସମ୍ବଳ,
ବୀର ନାମେ ମଣେ ଯଥା ତାରକ ମନ୍ତ୍ରର ।

ଭୃଗୁକ୍ଷେତ୍ର(୧) ପରିମୂଳେ ଗଲି ଅନନ୍ତର,
ଦେଖାଇଲା ଆଗେ ଶୁଭ ଜହ୍ନାଣୀ(୨) ସରଣୀ,
ଉପଳବନ୍ଧୁର ପନ୍ଥ ଯାଇ ଶୈଳେନ୍ଦ୍ରର
ଦେଲା ଗଢ ପ୍ରତିହତ, ଉଠି ଠାବେ ଠାବେ
ସମୁନ୍ନତ ଶୈଳୋପଳ ଓଗାଳିଛି ପଥ
ଦୌବାରିକ ପ୍ରାୟ, ଯେଉଁମି ଗୌରବେ ଉରଜ
ଜଗିଥିନ୍ତି ଅନ୍ତଃପୁର ଦେବାକୁ ପଥିକେ ।
ସତ୍ୟ କହ ତାର ଏହ ମୌନ ଉରସ୍ଥାର

(୧) ପର୍ଶୁରାମକ୍ଷେତ୍ର ।
(୨) ଶରରମାଜଙ୍କର ବଡଧାଡ । ଝୁରନ୍ତୀ ଏହା ଅତ୍ରାଶୀ ଶବଡ ।

ଗଲୁଁ ସର୍ବେ ବାଟ ଭାଙ୍ଗି, ଦୁର୍ଜନ ଦର୍ଶନେ
ସାଧୁ ଯଥା, ଅବା ଦେଖି ଦୁର୍ବଳ ପ୍ରବଳେ ।
ଏ ଯେ ଇତିବୃତ୍ତ ରାଜ୍ୟ, ଏହୁ ଶିଳାସ୍ତୂପ
ଇତିବୃତ୍ତ ପୋଥିଗାଦ, ଇତିହାସ ଏଥି
ଲୁଚିଅଛି କଥା କହି, ଶରୀର ଦେଖାଇ ।
ଯାପିଥିଲେ ଏହି ସ୍ଥାନେ ପଶ୍ଚିମ ଜୀବନ
କ୍ଷତ୍ରିୟ-ନିର୍ମୂଳ-କେତୁ ଜମଦଗ୍ନିସୂନୁ
ପରିହରି କ୍ଷତ୍ରଧର୍ମ, ଦ୍ୱିଜଧର୍ମ ଛାଡ଼ି,
କ୍ଷତ୍ରିୟ-ଶୋଣିତଲେପ୍ତା ଭୀଷଣ କୁଠାରେ
ଭାଙ୍ଗି ଗଢ଼ାଇଲେ ଏଥି ଗିରେନ୍ଦ୍ର ଚମ୍ପୁଠା ।
ଅଦ୍ୟାପି ବହଇ କୁଣ୍ଡ ତାଙ୍କ ନାମ ବହି,
ଏହି ଶିଳା ପରେ ଦେବୀ ଦ୍ରୁପଦଦୁଲାଳୀ
ବାଟିଥିଲେ ଗୋଲ ଏଥୁ ଅରଣ୍ୟବାସୀ,
ତାଙ୍କ ସୂତ୍ରରୂପେ ଶିଳା ବହୁଛି ସେ ଚିହ୍ନ, (୧)
ସ୍ପର୍ଶେ ହୁଏ ଯେଉଁ ତାହା ସୁବର୍ଣ୍ଣର ଶିଳ ।
ଏହି କୁଣ୍ଡ, ପ୍ରବାହିତ ମହେନ୍ଦ୍ରତନୟା
ମହର୍ଷି-ତର୍ପଣ-ପୂତା, ଗିରି ଅଙ୍ଗ ଯାଶୁ
ବହୁଯାଏ ସ୍ୱର୍ଣ୍ଣମୁଦ୍ରା, ଶୁଭ୍ରା, ଝରଣାର,
ଏହି ତରଙ୍ଗିଣୀ ବେଳା ଗିରି ସାଧକର

(୧) ଏଠାରେ କେତେକ ଖଣ୍ଡି ଦଳଦାଥ ପଥର ଅଛି ।

ସଫଳ ପ୍ରେମାଶ୍ରୁଧାରା, ଇଷ୍ଟଲବର୍ଣ୍ଣୀ,
ଜନ୍ମ ସ୍ନେହ କରୁଣାର ପବିତ୍ର ପ୍ରବାହ,
ଅଥବା ସେ ଶାନ୍ତ ପ୍ରୀତି ଅନସୂୟଯୁଗଳ
ବହୁଛନ୍ତି ନଦୀରୂପେ ଦସ୍ୟାରେ ଜଗଲ ।
ଛଟେସି ଏ ନଦୀତଟରେ ଆର୍ଯ୍ୟ ଅଙ୍ଗନେ
ଦ୍ରୋଣ, କର୍ଣ୍ଣ, ଗାଙ୍ଗେୟାଦି(୧) ମହାରଥୀକୁଳ
କରୁଥିଲେ ପାଣ୍ଡବଙ୍କୁ ଧନୁର୍ବେଦ ଶିକ୍ଷା
ଧନୁର୍ବେଦ ଉପମୂର୍ତ୍ତି ଭାର୍ଗବ ସକାଶୁ ।
ତମ୍ପଦେଶେ ଗିରିସଙ୍ଘ(୨), ବସି ନିତ୍ୟ ସର୍ବେ
ଅଛନ୍ତି ନିରତ କେଉଁ ଗୁପ୍ତ ମନ୍ତ୍ରଣାରେ,
ପ୍ରସ୍ତାବ, ଅନୁମୋଦନ, ସମର୍ଥନ ଆଦି
ହେଉଛି ସକଳ କାର୍ଯ୍ୟ ନୀରବେ ସମ୍ପନ୍ନ ।
ଅଥବା ସେ ଗିରିସଙ୍ଘ ମହେନ୍ଦ୍ରଗିରିର
ସ୍ନିଗ୍ଧଶାଳ ସୈନ୍ୟଶାଳ, ମକ୍ଷବରେ ଚଢ଼ି
ହୋଇଛନ୍ତି ଠୁଳ କରା ପରୀକ୍ଷା ଅପେକ୍ଷେ ।

ଅନନ୍ତର ଅବେହଲ ଦାରୁବ୍ରହ୍ମରୂପେ,
ପାଣ୍ଡବର ଯାହା ଗୁପ୍ତ ମହେନ୍ଦ୍ର ଅଗ୍ୟାରେ,
ଅନାବୃଷ୍ଟି କାଳେ ତହିଁ କଲେ ଜଳଜପ

(୧) ଭୀଷ୍ମ । (୨) ଅନେକବିକ୍ଷିତ ପର୍ବତଶୃଙ୍ଗର ସମଷ୍ଟି ।

ଅଚଳ ମହେନ୍ଦ୍ର ଚୂଳା, ତୁଅଳ ସୃଷ୍ଟି ।
ନିଷିଦ୍ଧ ପାଦଧି ଏଥି, ଦୈବେ ବେଣୁକାର
ଆସିଲେ ଏଠାକୁ ତୁଏ ସ୍ତ୍ରୀ ମଗ୍ନ ଗଲେ,
ଦେଖେ ବିଭୀଷଣ ସ୍ୱପ୍ନ, ଶୁଣେ ନିଷେଧାଜ୍ଞା,
ନିଦ୍ରାଭଙ୍ଗେ ଫେରିଯାଏ ଥରଥର ବକ୍ଷେ ।
ଏ ସ୍ୱର୍ଗରେ ଜୀବହିଂସା, ଏହୁ ଯୋଗମଠେ
ହତ୍ୟା, ସହିବ କି କେବେ ପ୍ରକୃତି-ତାପସୀ,
ସହିବ କି ସେ ପାପର ଲୀଳା ଏ ଶିଖରୀ,
ଏଣୁ ଏ ଶୃଙ୍ଗର ସବୁ ବିଧାନ ତାହାର ।
ଭକ୍ତି ସେ ମହାଯାନ୍ ମଞ୍ଜୁଷା ପାଇଲା (୧)
ବେଦ ଗ୍ରନ୍ଥ ସଜ୍ଜ-ଦନ୍ତେ, ଶୋଭେ ତାହା ଶିରେ
ଗୁଳ୍ମ-ଜଟା, ତହିଁ ପରେ ଲତାର ଉଷ୍ଣୀଷ,
ପୁଷ୍ପ ତୁଏ କାନ୍ତ ଯଥା କର୍ଣ୍ଣ ଆଭରଣ
ଜାଗମ୍ଭ ସାଦୃଶ୍ୟ ଶାଦ୍ୟ, ତଥା ଏ ପାଦପେ
ଶୋଷି ଏ ଗୁମ୍ଫାରୁ ରସ, ତୁଅନ୍ତି ବର୍ଦ୍ଧିତ ।
ଶୃଙ୍ଗ ନିମ୍ନେ ଅବସ୍ଥିତ ବୈଶ୍ୟଙ୍କ ଦଶ
ବିତଳ ପ୍ରାସାଦ ପ୍ରାୟ, ଗିରି ଅନ୍ତଃପୁର,
ମଣ୍ଡିତ ପ୍ରଥମ ତଳ କୋମଳ ଶରତ୍ରେ, (୨)

(୧) ଏଠାରେ ଚୌଷଠି ଓଅରଜ ଅଛ । ତାହା ଶାରଦା ଏବଂ ମଞ୍ଜୁଶ୍ରୀର ସୀମାବଳ । (୨) ଶାଳୁକ ।



ମୟୂରକଣ୍ଠି ଆ ରଙ୍ଗେ ରଙ୍ଗାଇ ପ୍ରକୃତି
ମସୃଣ ଶୈବାଳଦଳ, ବୁଣିଛି ଚହୁଁରେ
ଏହ ସ୍ନିଗ୍ଧ ସ୍ପର୍ଶକ ଅପୂର୍ବ ଆସନ ।
ଅନ୍ଧାର ଅପର ଧାର, ଜନନୀ ଯେସନ
ରଖେ ସ୍ନେହ ସନ୍ତାନକୁ କୋଳରେ ଲୁଚାଇ,
ତେସନ ଏ ଗିରିଦରୀ, ଏହି ଜଡ଼ାଙ୍ଗରେ
ରହସ୍ୟ-ଅନ୍ଧାରେ ଲୁଚାଇଛି ଅଙ୍କେ ।
ସ୍ଥଳରେ ସ୍ୱର୍ଣ୍ଣ ଧୂଳି, ଦୂରେ ଅନ୍ଧକାର
ଅଛି ସେ ହରିଣୀକା ଦୁଷ୍ଟା ପିଶାଚୀର
ଦେହ-ପ୍ରାଣ-ଶକ୍ତି, ତେଣୁ ଅଗମ୍ୟ ସେ ସଦା ।
କହିଲେ ସେଠାରେ କଥା, ସେହି କଥା କହ
ଦଶକନ୍ୟା-ପ୍ରତିଧ୍ୱନି ହୁଏ ଚଗିଲାଇ ।
ସତୀର ମୃତକାଗାର ଏ ଗିରିକନ୍ଦର
ପ୍ରବୃତ୍ତି— ତ୍ରିକାଳଦର୍ଶୀ ଋଷିଙ୍କ ଲେଖନୀ,
ଜାଳି ଏଥି ପ୍ରଦୀପ କରୁଅଛି ଧ୍ୱଂସ
ଜଗତର ଅନ୍ଧକାର, ମାତ ଏହା ଗର୍ଭ
ଚିରଅନ୍ଧକାରାଚ୍ଛନ୍ନ, ଶଣି ମଧ୍ୟ ଯାଇ
ମଣି ଭରେ ଅଲେଖ୍ୟର ଅପରୂପ ସୁଧ,
ମାତ୍ର ପୂର୍ଣ୍ଣ ଶଣିଗର୍ଭ ଅନନ୍ତ ଅନ୍ଧାରେ ।
ଉଠୁଥିଲା ପୂର୍ବେ ଏଥି ହିଲ୍ଲୋଳିତ

ପ୍ରଭାତେ, ସାୟାହ୍ନେ, ଲୁପ୍ତ ଏକାଳରେ ତାହା ।
ଏ ସ୍ଥାନ ସ୍ୱର୍ଗର ସାର, ଭବଚିନ୍ତାଶୂନ୍ୟ,
ନାହିଁ ଏଥି ସଂସାରର ଜ୍ୱଳନ୍ତ ଉତ୍ତାପ,
ନାହିଁ କାମନାର ଘୋର ଚପଳ ପ୍ରବାହ,
ନାହିଁ ହାହାମୟ ତୃଷା, କୁହୁକିନୀ ଆଶା,
ଅଛି ଏକ ମୌନଧ୍ୱନି ସୁପ୍ତ ଏ କାନନେ,
ଅଛି ତହିଁ ଛନ୍ଦ, ଭାବ, ସୌନ୍ଦର୍ଯ୍ୟ ସଙ୍ଗୀତ;
ସେ ଧ୍ୱନି ଶ୍ରବଣମାତେ ଦେଇ ପ୍ରତ୍ୟୁତ୍ତର
ହୃଦୟର ଅନ୍ତସ୍ତଳ ଧ୍ୱନି, ମିଶେ ତହିଁ ।

ଏହି କୁଞ୍ଜେ ବସି ରଘୁ ଭବକୁଳ-ରବି,
( ଯା ଯଶେ ଗୌରବପ୍ରାପ୍ତ ଅଦ୍ୟେତିହାସ )
ଇନ୍ଦ୍ର, ଯଥା ଐରାବତ ପୃଷ୍ଠେ, ମିଶାଇଲେ
ଉଣରଙ୍କ ହତ ସୈନ୍ୟ, ଏହି ଗିରିପଦେ
ସାହସୀ କଳିଙ୍ଗରାଜ-ଗଜ ସୈନ୍ୟ ସହ । (୧)
ଆକର୍ଷି ଆକାଶୁ ଘନ ଯଥା ଏ ମହେନ୍ଦ୍ର,
ଭଙ୍ଗେ ଜଳ ଦେହେ, ତଥା ବୀରମଣି ରଘୁ
ଆକର୍ଷିଣ ଶତ୍ରୁ ଯଶ କଲେ ଆତ୍ମସାତ ।
ଅଶ୍ରାନ୍ତେ କଳିଙ୍ଗପତି ଖେଳଇଲା ବୃଦ୍ଧି, (୨)

(୧) କଳିଙ୍ଗ ସାହସିକ ବୋଲି ପ୍ରବାଦ ଅଛି । (୨) ତନୟ ।

ଅର୍ପିଲେ ବିଜେତା ତାଙ୍କୁ ପୂର୍ବ ଅଧିକାର ।
ଦେଖିଲେ ଶବରେ ଅଣି ପଦ୍ମ ହଦନ୍ତଙ୍କ
କମ୍ପଶୀଳ ଉପସ୍ଥଳେ, ସ୍ୱଜନର ରୂପେ ।
ଛାଡ଼ିଲେ ସାନ୍ତ୍ୱନେ ସ୍ୱ ଏ, ମହାଜନ ନେତେ
ଦରିଦ୍ରର ଦୀନ ଦେଖି କୋଟି କୋହନୂର ।
ଏ ଶିଖରେ ବସି ରାମ ଜାନକୀ ସହିତ
ସେବିଥିଲେ ସିନ୍ଧୁବାୟୁ, ପୁଣି ଏହି ସ୍ଥାନେ
ହୋଇଥିଲା ବେନ ରାମ ଦେଖି, ମାତ୍ର ତାହା
ନୂଜେ ନୈବିଦ୍ୟରେ, ଦାସ୍ୟମିଶା ଭକ୍ତିଭରେ,
ବନ୍ଦିଥିଲେ ପର୍ଶୁରାମ ଶ୍ରୀରାମ ଚରଣେ ।
ରେଣୁ ଫୁଲ ଗନ୍ଧମୟୀ ଶବରବାଳା ଏ
ଉଶୀର ଚନ୍ଦନ ଦେଖି ଜାନକୀ ଛାମୁରେ
ଅର୍ପିଥିଲେ ତାଙ୍କ ପଦେ ଶ୍ରଦ୍ଧା ସମ୍ବର୍ଦ୍ଧନା,
ସନ୍ତୋଷରେ ଲୁବ୍ଧବନ (୧) ଦ୍ୱାର ବନମଧ୍ୟେ
ଭକ୍ଷିଥିଲେ ବୃକ୍ଷମାଳ ସୀତା ତାଙ୍କଠାରୁ ।
ଏହି ଯେ ବଦ୍ଧୃଚ୍ଛ ଥିଲେ ମହେନ୍ଦ୍ର ତନୟା,
ପୂତ ସୀତା ସଙ୍ଗ ସ୍ନାନେ, ଗାଉଛି ଅବଧି
ମୃଦୁ ମଧୁ କଳ ନାଦେ ସଙ୍ଗର ମାହାତ୍ମ୍ୟ ।
ରଘୁବଂଧୁ ପଦରେଣୁ-କୈବଲ୍ୟ ଲଭିବା

(୧) ଖଦୁହଲମଣ୍ଡ ।

ଶିରେ ଧରି ଏ ମହେନ୍ଦ୍ର, ହୋଇଛି କୃତାର୍ଥ ।
ଶୌର୍ଯ୍ୟବନ୍ତ ମୌର୍ଯ୍ୟ-ସୂର୍ଯ୍ୟ ଧର୍ମମହାରଥ
ପୁଣ୍ୟଶ୍ଳୋକ ବୌଦ୍ଧଶିଷ୍ୟ ରାଜର୍ଷି ଅଶୋକ
ଶତ ବର୍ଷ କାଳ ଯୁଝି କଳିଙ୍ଗ ସହିତେ
ବିଜୟ-ଲକ୍ଷ୍ମୀଙ୍କୁ ଶେଷେ କରି କରଗତ
ଅସିଥିଲେ ଏ ପର୍ବତେ ବିହାର ଅଶ୍ୱେ,
ବନ୍ଦୀ ହୋଇ ଏଥି ତାଙ୍କ ରଣଦନ୍ତାବଳେ
ଦେଇଥିଲେ ଗିରିଶୃଙ୍ଗ ସଂଖ୍ୟା ବୃଦ୍ଧି କରି ।
ଯୁଝି ନ ଥିଲେ ସେ ବୀର ଶସ୍ତ୍ରଲାଳସାରେ,
ଲଢ଼ି ଥିଲେ ଧର୍ମ ଯୁଦ୍ଧେ—ଧର୍ମ ସଂସ୍ଥାପନେ,
ଅହିଂସା ପରମ ଧର୍ମ, ପ୍ରବୃତ୍ତ ଏ ଦୀକ୍ଷା
ଜ୍ୱାଳିଥିଲେ କୀର୍ତ୍ତି-ପଥେ ସତ୍ୟ-ଦୀପ ଧରି
ପିନ୍ଧି ଶିରେ ସାମ୍ୟ-ମୈତ୍ରୀ-ଗୌରବ-କିରୀଟ ।
ରାଜା, ମାତ୍ର ନ ଥିଲେ ସେ ରାଜନ୍ୟ-ସୁଲଭ
ପ୍ରାକୃତ ପରଧପିପାସୁ—ଜନହନ୍ତା-ଯନ୍ତ୍ର,
ଗୌଣ ଅସ୍ତ୍ର ଥିଲା ସିନା କୃପାଣ ତାଙ୍କର,
ମୁଖ୍ୟ ଅସ୍ତ୍ର କୃପା, ସେହି ଅମୋଘାସ୍ତ୍ର ଧରି
ବୁଲି ବୁଲି ଭବ-ବନେ କରୁଥିଲେ ନଷ୍ଟ
ମୋହ ମଦ ମାତ୍ସର୍ଯ୍ୟାଦି ଶ୍ୱାପଦ ଶିକାର ।
ହୋଇଥିଲେ ବଳେ ଏଥି ଉତ୍କଳ-ସମ୍ରାଟ

ସଢେଜ୍ ।

ଗଙ୍ଗେଶ୍ୱର, ଗଙ୍ଗବଂଶ ପ୍ରବଳ ଭାସ୍କର
ଦିଗ୍ବିଜୟ କାଳେ, ଯାଙ୍କ ଭ୍ରୂଭଙ୍ଗୀ ମାତ୍ରକେ
ଅଜାଗିବା ଗୋଦାବରୀ ଥରୁଥିଲା ଭୟେ ।
ଦାକ୍ଷିଣାତ୍ୟ ଅଭିଯାନେ ଆସି କପିଳେନ୍ଦ୍ର, (୧)
ସ୍ଥାପିଥିଲେ ଏଥି ସ୍ୱୀୟ ବିଶ୍ରାମ ଶିବିର,
ବୃଦ୍ଧି କରି ରାଜ୍ୟସୀମା ଆକୁମାରୀ ଗଙ୍ଗା,
ଉତ୍କଳର ବାହୁବଳ, ଉତ୍କଳ ପ୍ରଭାବ
ଦେଖାଇ ଚକିତ କଲେ ଭାରତର ନୃପେ ।
ଉତ୍କଳ-ମହିମମୟ ମୁକୁଟ ପ୍ରଭାରେ
ଦେଉଥିଲା ଅଲୌକିକ ସ୍ୱର୍ଗେ ଏହି ଚୂଡ଼ା;
ମିଶୁଥିଲା ତାହା ସଙ୍ଗେ ଅଗ୍ନିଶିଖା ପ୍ରଭା । (୨)
ବାହୁଡ଼ି କର୍ଣ୍ଣାଟ ରଣୁ ଶ୍ରୀ ପୁରୁଷୋତ୍ତମ
ସୈନ୍ୟ ସହ ହୋଇଥିଲେ ଏ ଶୈଳେ ଭୂଇଁଆ,
ମୃଗୟା ବ୍ୟସନେ ଏଥି ଯାପି ଦିନକ୍ଷୟ,
ଲଭିଥିଲେ ଶିକାରରୁ ପରମ ପ୍ରମୋଦ ।
ଉତ୍କଳ-ସୌଭାଗ୍ୟ-ଉର୍ମି ଭାସୁଥିଲେ ଯେମା

(୧) ଉତ୍କଳ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ସମୟରେ ଉତ୍କଳର ସୀମା ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

(୨) ପ୍ରବାଦ ଅଛି, ମହେନ୍ଦ୍ରରେ ଏକପ୍ରକାର ଲତା ଥିଲା, ତାହା ରାତ୍ରେ ଅଗ୍ନି ଭଳି ଜଳୁଛି ଦିଶେ ।

ମିଶାଇଲେ ତପ୍ତ ଅଶ୍ରୁ ଏହି ଝର ଧାରେ ।
ଦେଖି ନରଦେବୀ ରୂପ ବନଦେବୀକୁଳ
ଲଭିଲେ ବିସ୍ମୟ ଲଜ୍ଜା, ଅପାର ବିସ୍ମୟ,
ଭାବିଲେ ଏସନ—ଆହା ଏ ରୂପମାଧୁରୀ,
ଲାବଣ୍ୟ-ସଲିଳ ସିକ୍ତ କଳ୍ପନା-ଲତାରେ
ଫୁଟାଇଲା କି ଏ ଏହି ସୁବର୍ଣ୍ଣ ସୁମନ,
ପାରିଜାତ ବର୍ଣ୍ଣେ ବୋଲି ବଜ୍ରିଲ ଝଟକ,
ରଚିତ ଏ ରମ୍ୟ ସୌମ୍ୟ ଚନ୍ଦ୍ର, ଅଥବା ଏ
ଅକରନିର୍ମିତ ମୂର୍ତ୍ତି, ବ୍ରହ୍ମାଣୀ କଳ୍ପନା
ଧରି ଯାଇଅଛି କିବା ବାସ୍ତବ ଆକୃତି ।
ଏତେ ରୂପ, ଏତେ ଠାଣି, ଏତେ ଅପୂର୍ବତା
ସମ୍ଭବେ କି ନରଲୋକେ, ସମ୍ଭବେ ଯଦ୍ୟପି
ତେବେ ନଷ୍ଟେ ନରଲୋକ ସୌନ୍ଦର୍ଯ୍ୟେ ଆଦର୍ଶ ।
କଲିକୃଷ୍ଣ ଶ୍ରୀ ଚୈତନ୍ୟ ପତିତତାରଣ,
କରଥିଲେ ଏହି ପଥେ ଯାତ୍ରା ଶ୍ରମଲାଥେ, (୧)
ବୈଷ୍ଣବମଣ୍ଡଳୀ ସାଥେ, ଦେଖିଛି ଏ ଗିରି
ପ୍ରେମନୃତ୍ୟ ତାହାଙ୍କର, ଶୁଣିଅଛି ପୁଣି
ହରିନାମ ସଂକୀର୍ତ୍ତନ, ନୀଳାଦ୍ରିବାସୀ,
ତାଙ୍କ ଖୋଲ କରତାଳ ବାଦ୍ୟ ଘୋର ରୋଳେ

(୧) ଚୈତନ୍ୟଦେବ ସମେସ୍ୱର ।

ହୋଇଥିଲା ଏ କନ୍ଦର ସୁପ୍ରତିଷ୍ଠିତ,
ତହିଁ ଗିରିମଣି ହୋଇ ସାଜିଲେ ଚନ୍ଦ୍ର
କୋଟି ଭକ୍ତେ କୋଟି ଭାଷା ଉଚ୍ଚାର ଗମ୍ଭୀରେ
ଗାଇଲା ଚୈତନ୍ୟସ୍ତୋତ୍ର, ଅଶ୍ରୁଜଳ ସ୍ରାବୀ,
ସେ ଭାଷା ଭାବକୁ କଲା ଗାମ୍ଭୀର୍ଯ୍ୟମଣ୍ଡିତ ।
ସେହି ସଂକୀର୍ତ୍ତନ ଧ୍ୱନି ସାଗର ସମୀର
ବହି ଆଣି କରାଇଲା ମହେନ୍ଦ୍ରକୁ ସ୍ନାନ,
ସ୍ନାନେ ମହେନ୍ଦ୍ର ତୀର୍ଥ, ଭୁଯେ ନିଶି ତହିଁ
ତୀର୍ଥଙ୍କରଣ, କଲା ତାକୁ ମହାପୁଣ୍ୟତୀର୍ଥ ।
ଏହି ଋଷିଶୃଙ୍ଗ କୋଳେ ସାଧୁଥିଲେ ଯୋଗ
ଯୋଗିବର ଋଷିଶୃଙ୍ଗ, ବ୍ରହ୍ମଣ୍ୟବ୍ରତ,
ଶାନ୍ତିରୂପା କାନ୍ତିଦେବୀ ଶାନ୍ତା ପତ୍ନୀ ସହ,
ଜନ୍ମିଥିଲା ଏ କନ୍ଦରେ ଉତ୍କଳେ ଉରସିଶେ
ଶତ ଜ୍ଞାନ-ବର୍ତ୍ତୀ, ଏବେ ନିର୍ବାପିତ ତାହା ।
ଏହିପରି କେତେ ସାଧୁ ସଜ୍ଜନ ସାଧକେ
ସେବନ୍ତି ଏ ମହାଧର୍ମ, କେ କହିବ ତାହା,
ମହାପୁରାତନ ଗିରି, କୋଷ୍ଠୀ ଧରଣୀର,
ଗଣି ଏ ପ୍ରାଚୀନ କୋଷ୍ଠୀ ଭୂମିତତ୍ତ୍ୱବିଦେ
କରନ୍ତୁ ମୀମାଂସା ମହୀ ଜୀବନସମସ୍ୟା । (୧)

(୧) ଭୂତତ୍ତ୍ୱବିତ୍‌ମାନେ ଏହାକୁ ପୃଥିବୀର ସର୍ବପ୍ରାଚୀନ ପର୍ବତ କହନ୍ତି ।

ବୁଲି ବୁଲି ହୋଇ କ୍ଳାନ୍ତ କ୍ଷୁଧିତ ତୃଷିତ
ଆସିଲେଁ ଓହ୍ଲାଇ ସର୍ବେ ଦାରୁବ୍ରହ୍ମଗିରୁ,
ଓହ୍ଲାଇବା ବେଳେ ପଛୁ ପ୍ରଦୀପ୍ତ ଗଳଥା
ଦେଲା ସନ୍ତାପ ଚିତ୍ତ, ଘୋର ଶୁଣାଇଲେ,
ଏ ସ୍ୱର୍ଗରୁ ଆସି ଯେତୁ ଇଚ୍ଛେ ପ୍ରତ୍ୟାବୃତ୍ତି,
ଏ ଅମୃତ ଶୋଭା ପାନେ ନ ମେଣ୍ଟେ ଯାହାର
ପାର୍ଥିବ ବୁଭୁକ୍ଷା, ତୃଷ୍ଣା, ଏହୁ ନବ ସ୍ୱର୍ଗେ
ନାହିଁ ତାହା ପାଇଁ ସ୍ଥାନ ଫେରିବାକୁ ଚଳେ,
ଅବର୍ତ୍ତନ୍ତୁ, ଶାନ୍ତି ତାର ସଂପ୍ରାପ୍ୟ ସ୍ୱର୍ଗଥା ।

ଗନ୍ତପଥେ ଶଚୀ ଶୁଭ୍ରା, କର୍ପୂରଧବଳ,
ନହେ ଶର୍ବାଣୀର କମ୍ପା ସ୍ଥୂଳ, ହେବ ପରି
ତୁଣ୍ଡିକ ଯାଆଣ (୧) ମେଲି ଚିତ୍ତ ଗୀର୍ବାଣର,
ହୃଦ୍ୟ କଣେ ମହେନ୍ଦ୍ରର ନାସାରନ୍ଧ୍ର ପ୍ରାୟ ।
ଶତ୍ରୁ ବନ୍ଧୁଙ୍କ ସହ କହୁ ନାନା କଥା
କଲେ ପଥ ଅତିକ୍ରମ, ଯାପିଲେ ସମୟ,
କି ସରଳ, କି ନିର୍ମାୟୁ ସ୍ୱଭାବ ତାଙ୍କର,
ପଚାରିଲେ କଥା, କହ ତାର ପ୍ରତିଧ୍ୱନି
ଦଅନ୍ତି ଉତ୍ତର ଅତି ସଂକ୍ଷିପ୍ତ ଭାଷାରେ,

(୧) ସାଧାରଣ ଶବ୍ଦ ।

ଚିତ୍ତ ମାତେ ଚିତ୍ତ, ପୁଣି ଚକ୍ଷୁ ମାତେ ଚକ୍ଷୁ,
ନାହିଁ ଭେଦାଭେଦ ଭକ୍ତ, ଭେକ୍ତେ ସାମ୍ୟ ଜ୍ଞାତ
ବନ୍ଧର ଶଙ୍କର ପ୍ରାଣେ ନହନ୍ତ ବଧାତା,
ଯେ ବଧିର ଏ ବଧାନ, ସେହ ବଧି ସିନା।
ରଖିଛୁ ଦୁର୍ଗନ୍ଧ ପଙ୍କେ ସୁଗନ୍ଧୀ କମଳ;
ଅବର ରଖିଛୁ ମୁକ୍ତା ଦେଖ ଶୁକ୍ତିକାରେ।
ନ ପାରନ୍ତି କହ ସ୍ତ୍ରୀସ୍ବ ବସ୍ତୁ ଅନ୍ତିମ ଗଣି, (୧)
ବ ଉଦାସ ଭାବ, ନଜ ଉଦର ବ୍ୟଗ୍ର
ନ ଚାହାନ୍ତି ସଂସାରର ଅପର କାହାକୁ,
ମହେନ୍ଦ୍ର ଅକାଶ ତୁଲ୍ୟ ନିର୍ଲିପ୍ତ ଯେସନ
ସଦା ସେ ଅକାଶ ସହ, ତେସନ ସବରେ,
ସଂସାରରେ ଥାଇ ସୁଦ୍ଧା ନିର୍ଲିପ୍ତ ସଂସାରେ।
ଯେଣୁ ଅଲ୍ପଭାଷୀ, ତେଣୁ ଦୃଢ଼ ସତ୍ୟଶୀଳ,
ମିଥ୍ୟାରେ ରଞ୍ଜିତ ସିନା ବାଚାଳର ଭାଷା।
ଏକଥାରେ ଗଢ଼ା ତାଙ୍କ ଜାଗନ୍ତ ଜୀବନ,
ଜାଗନ୍ତ ସଙ୍କେତ ଭାଷା—ବଗ୍ରଚ ଭୁଡାଟ,

(୧) ଲଟେଇଭ ଖଣ୍ଡ ଡମ ବର୍ଷୀୟ ହକର ଡାକାର ବାଲୁଦ ଶସ୍ତରକାକୁ ସେ କହିଥିଲେ, "ଦେବାଷି, ମେ ଗାଠ ଅଢ଼ିଛ କି, ୨୦ ଟି ୨୫ ବର୍ଷ ହେବ ଅଲ।" ଅଲ ଜଣକୁ ସୋଟିଏ ଅର୍ବତ ଦେଖାଇ ଜାମ ପଚ୍ଚରିବାରୁ ସେ କହିଲେ, "ଯେତେ ଅଛ ସବୁ ତ ଅର୍ବତ, ଅଲ ନାମ କଣ ଅଛି ?"

ସେ ଦୁହାଙ୍କେ କହ କଥା, ପ୍ରଭ ଦୁହାଙ୍କରୁ
ଶୁଣନ୍ତି ଉତ୍ତର ତାର ହୃଦୁ ଅବଚ୍ଛେଦେ ।

ମହେନ୍ଦ୍ର ତୁ ନଦଗୁର ନିତ୍ୟ ଲୀଳାସ୍ୱର୍ଗ,
ଶିର ପୁସ୍ତନ ମଧ୍ୟେ ମହା ପୁସ୍ତନ ।
ଅଦ୍ଭୁତ ଜନଣୀ ତୋର ଅଦ୍ଭୁତ କରୁଣା,
ସାଧୁ ତୁ ଶତ୍ରୁର ସ୍ପୃହା ଶିବ, ଉପକାର,
କରେ ଯେ ତୋ ଦେହେ କ୍ଷତ, ପ୍ରଦାନୁ ତୁ ତାକୁ
ମାଣିକ୍ୟ ରତନ, ଜମ୍ବା ମହୌଷଧିରୂପ
ହ୍ରିଷମ୍ବ ଜୀବନ, ଫୁଲ ଯଥା, କଲେ ତାକୁ
ଛିନ୍ନ, ତୋଳି ଦିଏ ହସ୍ତେ ଅମୃତ ସୁବାସ,
ସର୍ଷଣେ ସୁଗନ୍ଧ ଦାନ ଚନ୍ଦନର ଧର୍ମ ।
ଜଗତ ପଦାର୍ଥ ମଧ୍ୟେ ସଜ୍ଜନ ହୃଦୟ
ବଡ଼ ଏ ଜଗତେ, ମାତ ତୁହ ତାହାଠାରୁ
ଯାଇଅଛୁ ଉଚ୍ଚତାରେ ବଳି ବହୁଗୁଣ ।
ଦେବସ୍ଥିତ ଗିରିବର, ତ ଜ୍ୟୋତିଃ ତୋହର,
ଧାରଣେ ଅକ୍ଷମ ତାହା ମାନବ ନୟନ,
ସେ ପରମ ଦିବ୍ୟ ଜ୍ୟୋତି, ଲଭେ ଉପ୍ସାତ
ପାର୍ଥିବ ଜଗାରେ ପୁଣି·ଅତି ବାସନାରୁ ।
ସୁଷମା-ସୃଷ୍ଟିର ସୀମା ତୁହ ମେସ୍ପୀଧର,

ସୋହାଗ କାନନ ଫୁଲ ଶୋଭିଦେବାଙ୍କର,
ଅର୍ପିଥିଲି ମୁହିଁ କେତେ କଳ୍ପନା ମୂର୍ତ୍ତିଲି
ସେ ସୁଷମା ଭୋଗ ଆଶେ, ନ ପାଇ ସନ୍ତର
ମହିମା-ସାଗରେ ଭାଇ, ଅତଳ ଅକୂଳ,
ଉତ୍ସର୍ଗିଲି ସେ କଳ୍ପନା ତାହାର ଚରଣେ,
ଶୋଭା କଷିବାକୁ ଅପି ସେହି ଶୋଭାପଦେ
ହେଲି ବନାପଣେ ବନ୍ଧା, ହାୟ, କି ଦୁର୍ଭାଗ୍ୟ,
ଅଯୋଗ୍ୟ ଚେଷ୍ଟାର ଏହା ଯୋଗ୍ୟ ପୁରସ୍କାର ।
କି ଦେଖିବ, ମୋର ବନ୍ଧୁ—ସୁସ୍ଥସୁର ବେଳ
ମନ୍ଥିଲେ ହୃଦୟ-ସିନ୍ଧୁ, ବସ୍ତୁତ-ମନ୍ଦରେ,
ତହୁଁ ଜାତ ସୁଧାମୃତେ ପିଇଲି ଆକଣ୍ଠ,
ପ୍ରଥମ ଦର୍ଶନେ ଗିଳି, ଅଣୁ ମନେ ସୁଖ,
ବଢ଼ି ସେହି ସୁଖ ଅଣେ ଅକ୍ଷମ୍ୟ ଅତୃପ୍ତି,
ନିମବବର୍ତ୍ତିତ ସୁଖ ଅତୃପ୍ତି ଆକର;
ଆଣିଦେଇ ସୁଖ ଦୁଃଖ, ନୁହେ ତା ଅନ୍ୟଥା,
ଅତୃପ୍ତିଜନିତ ଦୁଃଖ ଦାରିଦ୍ର୍ୟ ତୋହର,
ଯେଉଁ ବାୟୁ ଅଦ୍ୟ କରେ ଅଗ୍ନିର ସାହାଯ୍ୟ,
ସେହି ବାୟୁ ଶେଷେ ତାକୁ ଦିଏ ତ ନିଭାଇ ।
ନ୍ୟସ୍ତ ତୋ ଅନନ୍ତ ଗର୍ଭେ ଭାବି କେଉଁ ରତ୍ନ,
କେ କହିବ ତାହା, ତୁହି କମଳାଭଣ୍ଡାର,

# ସପ୍ତମ ସର୍ଗ ।

ସୁପକ୍ୱ ଶ୍ରୀଫଳ ପ୍ରାୟ ତୋହର ଅନ୍ତର,
ଧନେ, ମାନେ, ଦାନେ, ଜ୍ଞାନେ ତୁହ ତୋ ଉପମା ।
କେତେରୂପେ ବାହାରୁ ତୁ ତୋହ କଳେବରେ,
ଫୁଲେ ବାସ, ଫଳେ ରସ, ନିର୍ଝର ଜୀବନେ
ଜୀବନ ରୂପରେ ତୋର ଶକ୍ତି ବିଦ୍ୟମାନ ।
ଅଛି ତୋର ନେତ୍ରେ ଅଶ୍ରୁ, ପର ଦୁଃଖନାଶୀ,
ହୃଦୟେ କରୁଣା, ଦେହେ ଶକ୍ତି—ସହିଷ୍ଣୁତା;
ତୁହି ସମଦର୍ଶୀ, ତୁଷ୍ଟ, ଶିଷ୍ଟ ସକଳର
ସେନ ସର୍ବ ଆବେଦନ—କରୁଣ, କ୍ରନ୍ଦନ,
କରୁ ଦୀନ ଆଶ୍ରିତର ପ୍ରାର୍ଥନା ସଫଳ,
ତୁ ଆଦର୍ଶ ଗୃହୀ, ପୁଣି ଆଦର୍ଶ ସନ୍ନ୍ୟାସୀ ।
ପତ୍ନୀହୀନ ଗୃହମଣି କଥାଟିଏ ତୋତେ,
କାହିଁକି ତୁ ଦିଶୁ ସଦା ଯଥା ଶୋକମଗ୍ନ,
ବାହାରୁଛି ପ୍ରାଣ ଫୁଟି ନିର୍ବାକ କ୍ରନ୍ଦନ,
କି ଗମ୍ଭୀର ଗୁପ୍ତ ବ୍ୟଥା ବହୁଛୁ ଅନ୍ତରେ
ଅଖଣ୍ଡ ଧଇର୍ଯ୍ୟ ସହ, କହୁନୁଁ କି ତାହା ?
ନ କହ ପଛକେ, ମାତ୍ର ଆକାର ଇଙ୍ଗିତୁ
ପଡ଼ୁଛି ତା ବ୍ୟକ୍ତ ହୋଇ, ସ୍ୱମଧ ପଣ୍ଡ ତୁ
ଅତୁଳ ଗୌରବମୟ ଅଙ୍କରୁ ସୌଭାଗ୍ୟ
ହୋଇଛୁ ବଞ୍ଚିତ, କ୍ଷୁଣ୍ଣ, ହତାଶ, ଉଦାସ ?

ଛନ୍ଦ ନା, ଛନ୍ଦ ନା ଗିର, ଅପାର ପଣତ,
ନ ଜାଣୁ ତ ନଗରାଜ ମହିମା ତାହାର,
ଭକ୍ତ୍ୟ ଅନ୍ତରେ ସ୍ତବ କଲେ ତାର ପାପ ।
ଅଶିବ ଅଦୃଷ୍ଟ ଫେର, ନ ହୁଅ ଚଞ୍ଚଳ,
ଫେର ଅସେ ଯଥା ସନ ତୋ ଶୃଙ୍ଗ ବାହାରି
ଯଥା ଢାଲେ ସେହୁ ଶୃଙ୍ଗେ, ତ ସନ୍ଦେହ ଏଥି ।

ଅନୁଷ୍ଠିତ ହୋଇ ବର୍ଷେ ତେତେ ମହୋତ୍ସବ,
ଫାଲ୍ଗୁନ ଦ୍ୱାଦଶୀ ପୁଷି ଅମାବାସ୍ୟା ଦିନ
ମାହେନ୍ଦ୍ର ଯୋଗରେ ପଡ଼େ ପୁଣ୍ୟ ସ୍ନାନଯୋଗ
ପର୍ଶୁରାମ କୁଣ୍ଡେ, ହୁଏ ଶ୍ରାଦ୍ଧ ତର୍ପଣାଦ ।
ସେ ଦିନ ନିର୍ଜନ ଅଙ୍ଗ୍ୟା ଉତ୍କଳ ତୋହର,
ବହୁଯାତ୍ରୀ ସମାଗମେ ଏ ତରୁ ଅରଣ୍ୟ
ନଗରଣ୍ୟେ ପରିଣତ ହୁଏ ବେଳ ଦିନ ।
ଅବର ଜାଗର-ଯାତ୍ରା ଗୋକର୍ଣ୍ଣ-ଈଶ୍ୱରେ,
ହର ହର ସ୍ୱରେ ହୁଏ ଟିଁଚା ଦଶ ଧ୍ୱନିତ,
ଜ୍ୱଳେ ମହା ଉଣାଭାଲେ ଆକାଶପ୍ରଦୀପ,
ଜ୍ୱଳେ ବର୍ତ୍ତି କର୍ଣ୍ଣ ସ୍ତବ ମହିମ୍ନ ଅବୃତ୍ତି,
ବାଜେ ନାନା ବାଦ୍ୟ, ପୁଷ୍ପ-ବିଲ୍ୱଦଳଗନ୍ଧେ
ହୁଏ ସୁରଭିତ ସ୍ଥଳୀ, ଓଙ୍କାର ଅମରେ

ବାରିଦ-ଶ୍ରମାନେ ତଳେଁ, ସ୍ୱର୍ଗଙ୍ଗାପଛିଲେ
ପୁଣି ପାରିଜାତ ଫୁଲେ, ବିଦ୍ୟୁତ ବହ୍ନ,
ପାଞ୍ଚଶ ଶଙ୍ଖରେ ପୂଜା ଅର୍ପନ୍ତି ସାନନ୍ଦେ ।
ସ୍ୱର୍ଗର ଗରିମା ଆସି ସେ ବନ ମଧ୍ୟରେ
ଉତ୍ସବରେ ତୋ ଦେବେ ପ୍ରାଣେ, ପରିତୃପ୍ତ କାମ୍ୟ ।
ବାସନ୍ତୀ ପୂର୍ଣ୍ଣିମା ତୋର ଅଭ୍ରଦେଶଳ ଛଟା,
ଗିରିଛତ୍ରପତି ରୁଦ୍ର, ସମସ୍ତ ଉତ୍କଳ
ଆସି ଗିରି-ପୂଜା ତୋର ଦେଖନ୍ତି ଛମୁରେ ।
ମେଘମନ୍ଦ୍ର ମେଘାସନ(୧) ଯୋଗାଏ ଦନ୍ତାଳ
ପାଟହସ୍ତୀ; ଦେବେ ଆଣି ଶାଳପର୍ଣ୍ଣପୁଟେ
ପବିତ୍ର ଉଦକ ବାରି ବୈତରଣୀ ଘଟେଁ
ଗୋନାସାଣିକଣ୍ଠି(୨); ତୋଳି ନାଗେଶ୍ୱର ଫୁଲ
ସ୍ୱ ଉଦ୍ୟାନୁ ମାଲ୍ୟଗିରି(୩) ଅର୍ପେ ଉପହାର;
ଅଳକ(୪) ଚନ୍ଦନ ଦେଉଛି, ଶିବ କପିଳାସ(୫)
ଧରେ ତୋ ସମ୍ମୁଖେ ଆଣି ସ୍ୱଚ୍ଛାମ୍ବୁ-ମୁକୁର ।

---

(୧) ମୟୂରଭଞ୍ଜସ୍ଥ ପର୍ବତ । ଏହି ପର୍ବତରେ ହାତୀ ଅଛନ୍ତି ।
(୨) କେନ୍ଦୁଝରସ୍ଥ ପର୍ବତ । ଏହା ବୈତରଣୀର ଉତ୍ପତ୍ତି ସ୍ଥାନ ।
(୩) ମାଲ୍ୟଗିରି ପାଲଲହଡ଼ା ରାଜ୍ୟରେ ଅବସ୍ଥିତ। ଏଥିରେ ବହୁତ ନାଗେଶ୍ୱର ଗଛ ଅଛି ।
(୪) କଟକ ଜିଲ୍ଲାସ୍ଥ ପର୍ବତ, ଏଥିରେ ଚନ୍ଦନ ବୃକ୍ଷ ଅଛି ।
(୫) ଢେଙ୍କାନାଳ ଅନ୍ତର୍ଗତ କପିଳାସ ପର୍ବତରେ ବହୁତ ଝରଣା ଅଛି ।

ଖଟ୍ଟଶିଷ୍ୟ ଶୈଳେ ତୋର ଅସି ନାନା ଦେଶୁ
ଖଟନ୍ତି ସେବାରେ, କେହୁ ଧରେ ଛତ୍ର ଶିରେ,
କେ ଧରେ ଆଲଟ, କେହୁ ଚମ୍ବର, ଅଢ଼େଣୀ,
କେହ ଫୁଙ୍କେ ଶଙ୍ଖ, କେବା ତାଳେ ଶ୍ରୀଗମନ ।
ଏହିପରି ଦେଖାଉ ତୁ କେତେ ମହୋତ୍ସବ,
ପଞ୍ଚ ଭିକ୍ଷୁବର ରୁହି ନିତ୍ୟ ଲୀଳାଗାର,
ଦେଖୁଛୁ ଯେମନ୍ତ ପୂର୍ବେ ଦେଖାଉଛୁ ତେତେ,
ଜଏ ପଟାନ୍ତର ତୋତେ ମହୀରେ ମହେନ୍ଦ୍ର ?

ଗିରି, ତୋ ପାଷାଣପୁଞ୍ଜ ଅହା କି ମଞ୍ଜୁଳ,
ନୀରବ, ମଧୁର, ଶାନ୍ତ, ଯଥା ଗୁରୁ ଛବି,
ନାଗରିକ କୋଳାହଳେ ହୋଇ ବିରକ୍ତିତ
ଅସିଛନ୍ତି ଏ କୁଟୀରେ ତୋ ଦେହେ କି ଉଠି,
ତୋ ଗୂଢ଼ ଗମ୍ଭୀର ବେଦ ଶୁଣିବା ଆଶୟେ ?
ଶବରସ୍ୱନଶାଳୁକ ଦେଖି ବୈଦେଶିକେ
ଲୁବ୍ଧ ଦଳେ ଗୁରୁ ନାମ କରନ୍ତି ସାର୍ଥକ ।
ପୁଷ୍ପ-ଆବରଣା, ଯେଉଁ ପୁଷ୍କର ପିତୁଳା,
କଦଳୀ ସୂର୍ଯ୍ୟଙ୍କ ମଧ୍ୟେ ଦୋଳେ ନବଶିଶୁ,
“କାଙ୍ଗାଳୁଣୀ ରକ୍ଷାଙ୍କ ମଧ୍ୟେ ବସିବାଇଁ
ଦେଇଛନ୍ତି ଏ ରହୁଛି,” ଏହି ଭାବ ଅବା

ଜଣାଉଛନ୍ତି ପ୍ରତିବେଶୀ ତରୁଲତାଗଣେ ।
କଣ୍ଠେ ଶୋଭେ ବନ୍ଧୁ ସହ ଗୁଞ୍ଜମାଳା ସହ
ବହୁବର୍ଣ୍ଣ ପ୍ରସ୍ତ, (୧) କର୍ଣ୍ଣେ ପୁଷ୍ପର ବେଣୁଲି । (୨)
ମାଡ଼ୁଛି କୁଟୀର ଚାଳେ ଲାଉ ବୋଇତାଳୁ,
ଚଉପାଶେ ବୁଲୁଛନ୍ତି ପାଳିତ ପଶୁଏ,
ଦୂରରୁ ମାଣ୍ଡିଆ ଜନା ସାଣ୍ଢିଆ କ୍ଷେତରୁ
ଆଣୁଛି ସମୀର ବହୁ ଯତ୍ନ ଶସ୍ୟାମୋଦ ।
ବନ୍ୟ ଜାତିଙ୍କର ବେଶ, ପରିପାଟୀଶୂନ୍ୟ,
ନୁହନ୍ତି ସେମାନେ କେବେ ଲୁଚିମଣ୍ଡାଭକ୍ତ,
କିମ୍ବା ଗ୍ରାମ୍ୟତାର ପ୍ରିୟ ଉପାସକ, ବନେ
ଜନ୍ମ ତାଙ୍କ, ବନସ୍ଥବେ ଗଠିତ ଶରୀର,
ସହଜନ୍ତ ବନ୍ୟ ଖାଦ୍ୟ ବସ୍ତ୍ର ଅଳଙ୍କାର ।
କଥା କାର୍ଯ୍ୟେ ନାହିଁ ଭେଦ, ସର୍ବେ ଉଦ୍ୟୋଦ୍ୟୋଗୀ,
ନ ଚଞ୍ଚଳୁ ଧର୍ମେ ପଛେ, ମାଂସ ପ୍ରକାଶନ୍ତି
ପାପେ ଘୃଣା, ଘୃଣାକ୍ଷର ପ୍ରାୟେ; ଅନ୍ତରକ ।
ସାହସେ ଅଗ୍ରଗଣ୍ୟ, ଏକବୁଝା ଜାତି,
ପାଇଲେ କିଞ୍ଚିତ ବାଧା ମନୋରଥ ଯିବେ,
ମନ୍ତ୍ରବଳେ ରୁଦ୍ଧବୀର୍ଯ୍ୟ ଭୁଜଙ୍ଗମ ପ୍ରାୟ
ଗର୍ଜନ୍ତି ଗମ୍ଭୀରେ, ସଦା କୌମଳତାବଶ ।

(୧) ପ୍ରସ୍ତରମାଳ । (୨) ମଲ୍ଲିକବତୀ ନାମକ ଅଳଙ୍କାର ।

## ମହେନ୍ଦ୍ର ।

ସୁବର୍ଣ୍ଣ-ପୂଜିତ, ସ୍ତୁତ ତୁମ୍ଭ ହେ ମହେନ୍ଦ୍ର,
ଉତ୍କଳର ଗିରିଗୋଷ୍ଠି ଧନ୍ୟ ତୋର ଯୋଗୁଁ ।
ବଂଶେ ଜଣେ ହେଲେ ଯୋଗ୍ୟ, ତାହାରି ଯୋଗ୍ୟତା
ସମସ୍ତ ବଂଶକୁ କରେ ଜ୍ୟୋତିଳ (୧) ଉଜ୍ଜ୍ୱଳ ।
ବସୁଧାକୁ ଅସ୍ଥି ଦାନ କରି ତୋ ସ୍ୱପନା
କରେ କଳଙ୍କିତ, ତେଣୁ ନ ମେଣ୍ଟେ ଅଳ୍ପେ ସେ,
ନିଭଇ କି ଦାବାନଳ ଗଣ୍ଡୂଷ ଜଳରେ !

ହେ ମନ୍ତ୍ରୀ-ମନ୍ତ୍ର, ଭୂଷା ମହେନ୍ଦ୍ରବହାସି
ଶ୍ରୀ-ନିବାସ ଶ୍ରୀନିବାସ ରାଜମଣି ଦେବ,
ଦେଖିଲି ଏ ପୁଣ୍ୟଗର୍ଭେ ତୁମ୍ଭରି ପ୍ରସାଦେ,
ତୁମ୍ଭରି ପ୍ରସାଦେ ନୃପ, କଳ୍ପନାର ସ୍ୱପ୍ନ
ବାସ୍ତବରେ ପରିଣତ ହେଲା ଦିନା ଅଜ,
ଜଳିଲା ମୋ ଆଶା-ସ୍ୱର୍ଗେ ସାଫଲ୍ୟ-ଚନ୍ଦ୍ରମ ।
ମସ୍ତିରେ ଲୁଟିବ ତୁମ୍ଭେ, ମହେନ୍ଦ୍ର, ତୁମ୍ଭର
ଅକ୍ଷୟ ଅମର ମହୌଷଧିର ଭଣ୍ଡାର ।
ଗିରିରାଜ, ତୁମ୍ଭ ପ୍ରଜା—ହୃଦୟ ଉପମା,
ମହତ୍ ମୋର ଉପକାର, ଅପରିଶୋଧିତ,
ତଳ ମୋରେ କୃତଜ୍ଞତା-ଅଚ୍ଛେଦ୍ୟ-ବନ୍ଧନେ

(୧) ଜ୍ୟୋତିଯୁକ୍ତ ।

ଅଛନ୍ତି ଅନେକ, ଧନ୍ୟ ସହୃଦୟତା ତବ ।
ନୁହେ ବ୍ୟକ୍ତିଗତ ସ୍ୱାର୍ଥ, ନୃପତି-ଜୀବନ,
ଜାତୀୟ ଜୀବନ ତାହା, ଜାତିର ସମ୍ବଳ,
ଦୃଷ୍ଟାନ୍ତ ସେଥିର ନୃପ, ତବ ସ୍ୱକରଣୀ ।
ଦୀନ ଛାତ୍ରଙ୍କର ଛାମୁ ପରମ ଅଶ୍ରୟ,
କରି ଛାତ୍ରବୃତ୍ତି ଦାନ ଗ୍ରେପିଅଛ ଯେଉଁ (୧)
କୀର୍ତ୍ତି-ଶେଫାଳିକା ତରୁ, ଏବେ ପୁଷ୍ପିତ ସେ,
ତାହାରି ସୁବାସ ସ୍ରୋତ, ଜାପାଉପାମ୍ବନ,
ଧାଉଁଛି ପ୍ରବଳେ ଲଙ୍ଘି ସ୍ୱଦେଶର ସୀମା,
ଧାଏଁ ଯଥା ରୁମ୍ଭ କରୁ ଝହର ଶାୟକ
ପାରିଧି ସମସ୍ତେ ଶରେ, ଭେଦ ବନଦେଶ ।
ମହାନ୍ ଭୂପତି ତବ ଯୋଗ୍ୟ ପ୍ରତିଦାନ
ନାହିଁ ଏ ଦୀନର, ଯଦି ଏ ହୃଦୟ ମୋର
ହୋଇଥାନ୍ତା ବାସଫୁଲ ଅଥବା ଚନ୍ଦନ,
ପୂଜନ୍ତି ତହିଁରେ ନୃପ ଛାମୁଙ୍କ ପୟର,
କିନ୍ତୁ ନାହିଁ, 'ନାହିଁ' ଶବ୍ଦ କେବଳ ସୁଲଭ
ଦରିଦ୍ର କୁଟୀରେ, ଦୀନ ମହାଧନୀ ତହିଁ,
ରାଜଯୋଗ୍ୟ ଉପାୟନ ନୁହେ କିଛି ତାହା,

(୧) ମଡ଼ୁଗାର ବର୍ତ୍ତମାନ ନରପତି ମହୋଦୟ ପ୍ରାରମ୍ଭକ ଉତ୍କଳର ନାନା ଜାତୀୟ ଶିକ୍ଷାର୍ଥୀମାନଙ୍କୁ ବାର୍ଷିକ ଚାରି ହଜାର ଟଙ୍କା ବୃତ୍ତି ପ୍ରଦାନ କରନ୍ତି ।

# ମହେନ୍ଦ୍ର ।

ହୃଦୟର ଭକ୍ତି ନୁହେ ପଦାର୍ଥବିଶେଷ,
ତାହା ପାଇଁ ଶୂନ୍ୟଗର୍ଭ ଶବ୍ଦର ସମ୍ଭାର,
ନ ପାଇଣ ଦେଖୁ ଆନ ଅର୍ପିଲି ନିଜକୁ,
ସେନା ଦେଉ ମହାମନା, ଏତିକି ମାଗୁଛି ।
ହେ ବର୍ଣ୍ଣିତ ଭାଗ୍ୟଧର, ପ୍ରଶସ୍ତି ତୁମର,
ତୋଳୁଛି ହୃଦୟେ ତୁମ୍ଭେ ସ୍ମୃତି-ଅଟ୍ଟାଳିକା,
ଗୋଟି ଗୋଟି କର୍ମ ତବ କୋଟି ସ୍ୱର୍ଣ୍ଣସ୍ମୃତି ।
ସ୍ମରିବ ନୃମଣି, ମନେ ସତତ ଏତିକି—
ସମୁନ୍ନତ ମହେନ୍ଦ୍ରର ଅଧିପତି ତୁମ୍ଭେ,
ଯାହା ନାହିଁ ସ୍ୱର୍ଗେ, ତାହା ଅଛି ତବ ରାଜ୍ୟେ,
ନିବସନ୍ତି ସ୍ୱର୍ଗେ ଇନ୍ଦ୍ର, ଦେବକୁଳନାଥ,
ମାତ୍ର ତୁମ୍ଭ ରାଜ୍ୟେ ସଦା ନିବସେ ମହେନ୍ଦ୍ର,
କଳିର ନୃପତି, ଏଥି ନିଜର ଗୌରବ,
ମହତ୍ତ୍ୱର ମାନଦଣ୍ଡ ତୁମ୍ଭର ଏ ଗିରି,
ଜଣାଉଛି ତୁମ୍ଭ ମୂଲ୍ୟ ତୁମ୍ଭକୁ ଜଗତେ ।

ହେ ଅପୂର୍ବ ଅସୀମିତା ମହେନ୍ଦ୍ର, ତୋହର,
ବୃନ୍ଦ ବନ ମଧ୍ୟେ ମୋତେ କରିନେଲୁ ତୋର,
କଲୁ ଗିରି ଅଭାଗ୍ୟ ମୁଁ, ନ ପାରିଲି କରି
ତୋତେ ଯାହା ମୋର, ମନେ ରହିଲା ଏ ଦୁଃଖ ।

ଏ କହଣ, ଆଜୀବନ ପରାଧୀନ ମୂର୍ଖ,
ଚଳେଁ ପର ଗୋଡ଼େ ବାଟ, ଦେଖେଁ ପର ନେତ୍ରେ
ଦୃଶ୍ୟ, କହେଁ ପର ତୁଣ୍ଡେ କଥା, ଗାଏଁ ଗୀତ,
ନିୟତ ଅନ୍ୟର ଦାସ ନର ସିନା ହବେ,
ପ୍ରତି କାର୍ଯ୍ୟ ସିନା ତାର ନିୟତ ଅନ୍ୟର
ରୂପବନ୍ତ ପ୍ରତିଧ୍ୱନି, ଏ ଗର୍ବ ତାହାର !
ତୋର ଦୟା, ତୋ ଦାକ୍ଷିଣ୍ୟ, ପୁଣି ତୋ ସ୍ନେହର
ସୁମଧୁର ଅତ୍ୟାଚାର, (ସାଧୁ ଯେବେ ହଠ
ସନକୁ ଲଗାଇ ଦେଇ କୌତୁକ ଅନ୍ତରେ)
ସ୍ମୃତି-ଶିଳା-ଫଳକରେ ରହିଲା ଅଙ୍କିତ,
ଅଙ୍କିତ ତୋ ବକ୍ଷେ ଯଥା ଧର୍ମାନୁଶାସନ ।
ତୋ ଦୁଃଖ ପାସୋରା ଅଙ୍କେ ନବସି ନରେଲେ
ଦୁଃଖଲକ୍ଷ୍ୟାନ୍ତ ହୃଦ କହଥାନ୍ତ ଲସ୍,
ହାୟ, ଏ ଦୁରାଶା ସ୍ୱପ୍ନ, ଅପ୍ରାପ୍ୟ ପ୍ରତ୍ୟାଶା,
ଯୋଗ୍ୟ ସିନା ସିଦ୍ଧ ହୋଇ ତୋ ଅଙ୍କ ବିହାରେ,
କାହିଁ ସେ ସୁକୃତିବନ୍ତ, କାହିଁ ମୂର୍ଖ ପୁଣ,
ଲାଗେ କି ଶିମିଳୀ ଫୁଲ ଦେବତା ପୂଜାରେ ।
ସେତୁଟି ମହେନ୍ଦ୍ର, ଏବେ ବିଦାୟ ତୋ ପାଶୁ,
ଲଗାଇଛୁ ଏ ମାୟା ରୁ, ବଳୁ ନାହିଁ ମନ
ଛାଡ଼ିବାକୁ କ୍ଷଣେ ତୋର ପବିତ୍ର ସଂସର୍ଗ,

ମନ ମଧ୍ୟେ ଦେବ ଯଦି ପାରନ୍ତା ପ୍ରବେଶି,
ଦେଖନ୍ତେ ଶପଥ କରି ଛୁଇଁ ତୋ ଚରଣ,
ଜଳ ଆସି ପାଦପଦ୍ମ ପୂଜନ୍ତେ ତୋହର
ସନ୍ତୁଷ୍ଟ ତୋ ଦେବତ୍ୱ ମୁଦେ ଫୁଲ ଫଳ ଜଳ ।
ଅଥବା ଆସନ୍ତା ଯଦି ସୂକ୍ଷ୍ମ ମୋ କୁଟୀର
ତୋହର ସନ୍ନିଧାନେ, ତେବେ ତୋହର ପାଦମୂଳେ
ବସି ମୁଁ ନିଭୃତ, ସାନ ନିହାର ପ୍ରାୟ(୧)
ପିଅନ୍ତି ତୋ ଶୋଭା-ସୁଧା, ପୂରାଇ ହୃଦୟ,
ହାୟ ଏ କଳ୍ପନା ଦିନା ଦୁରାଶାର ସ୍ୱପ୍ନ !
ସେନ ଅର୍ଘ୍ୟ ଗିରିବର, ହୃଦୟର ବ୍ୟଥା,
ଅସମ୍ପୂର୍ଣ୍ଣ ଆକାଂକ୍ଷାର ଅସମ୍ଭାଳ ଅଶ୍ରୁ,
ଆଉର ସେନ ରେ ଗିରି ଶେଷ ଉପହାର,
ନୀରସ ହତାଶ କ୍ଲାନ୍ତ ଜୀର୍ଣ୍ଣ ଜୀବନର
ମର୍ମବାଣୀ ହାହାଧ୍ୱନି, ବିଷାଦ ନିଶ୍ୱାସ,
ସେନ ଏହି ନୈଶ-ନୀର-ସିଞ୍ଚିତ-ପତ୍ରିକା ।

ସମାପ୍ତ ।



(୧) ମହେନ୍ଦ୍ରର ପଶ୍ଚିମ ପାର୍ଶ୍ୱରେ ମହେନ୍ଦ୍ରର ପାଦଦେଶରେ ସାନ ନିହାର ପର୍ବତ ଅବସ୍ଥିତ । ଏହା ପାରଳା ଏଜେନ୍ସି ମାହାଲର ଅନ୍ତର୍ଗତ ।